ପ୍ରକାଶକ

ପ୍ରଗତି ପବ୍ଲିଶସ୍
ବାଙ୍କାବଜାର
କଟକ—୨

ପ୍ରଥମ ପ୍ରକାଶ—

ଡିସେମ୍ବର ୧୯୬୨

ମୂଲ୍ୟ—

ତିନିଟଙ୍କା ମାତ୍ର ।

ମୁଦ୍ରଣ—

ନବଭାରତ ପ୍ରେସ୍,
କଟକ—୨

# ଲେଖକ ତରଫରୁ

"ସାହିତ୍ୟ-ବଲ୍ଲରୀ" ରେ ସଙ୍କଳିତ ପ୍ରବନ୍ଧ ଗୁଡ଼ିକ ଭିନ୍ନ ଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇଥିଲା । ଏହି ପ୍ରବନ୍ଧମାନଙ୍କ ମଧ୍ୟରେ ପ୍ରକାଶକାଳର ବ୍ୟବଧାନ ବହୁତ ବେଶୀ । ତେଣୁ ସେମାନଙ୍କ ମଧ୍ୟରେ କୌଣସି ନିର୍ଦ୍ଦିଷ୍ଟ ଆଦର୍ଶ ଅଥବା ଭାବନାର ଧାରା ଖୋଜ ପାଇବା ସମ୍ଭବ ନୁହେ । ବନ୍ଧୁ ଅଧ୍ୟାପକ ଦେବେନ୍ଦ୍ର ମହାନ୍ତି ଏ ସଙ୍କଳନର ପ୍ରବନ୍ଧ ଗୁଡ଼ିକୁ ପାଠକର ଦରବାରକୁ ଆଣିବା ପାଇଁ ଆଗ୍ରହ ପ୍ରକାଶ କଲେ । ସେଥିପାଇଁ ସେ ମୋର ଧନ୍ୟବାଦର ପାତ୍ର । ଅତୀତରେ "ଓଡ଼ିଆ ସାହିତ୍ୟର ଭୂମିକା" ଏବଂ "ସାହିତ୍ୟ- ପରିକ୍ରମା" ର ପ୍ରବନ୍ଧ ଗୁଡ଼ିକୁ ଯେଉଁମାନେ ଶ୍ରଦ୍ଧା ଓ ସହାନୁଭୂତିର ସହିତ ସ୍ୱାଗତ କରିଥିଲେ, ସେହି ସୁଧୀ, ରସିକ ପାଠକଗଣ "ସାହିତ୍ୟବଲ୍ଲରୀ" ପ୍ରତି ସୁବିଚାର କଲେ ଅତ୍ୟନ୍ତ ସୁଖୀ ହେବି ।

ଦଶହରା
।୧୦।୧୯୭୨

ପଠାଣି ପଟ୍ଟନାୟକ

# ଉତ୍ସର୍ଗ

**ଶ୍ରୀଯୁକ୍ତ ଗୋପୀନାଥ ପଟ୍ଟନାୟକ**
**ଶ୍ରୀଯୁକ୍ତ କାଶୀନାଥ ପଟ୍ଟନାୟକ** }

ଦାଦା,

ପୁରୁଣା ଅଲେଇଗଳୀର ସେଇ ଝାଟିମାଟି ଚାଳଘରଟି ଏବେବି ସେଇମିତି ଅଛି । ଯେଉଁ ଘରେ ଆପଣମାନେ ମୋତେ ଗୋଡ଼େ ଗୋଡ଼େ ଜଗି ମଣିଷଟିଏ ହେବାପାଇଁ ଆନ୍ତରିକ ଉଦ୍ୟମ କରୁଥିଲେ । କେବେ କେବେ ଆନମନା ହୋଇ ଭାବିବସିଲେ [illegible] ଲାଗେ ! ! ସତେ କଅଣ ଭୁଲଟାଏ କରି ପକାଇଲି କି ? ପୁଣି ଭାବି ସୁଖୀ ହୁଏ ଯେ ସେଦିନର ଆପଣମାନଙ୍କର ସେଇ ଜଗୁଆଳୀ ଆଖିର ସ୍ମରଣରେ ଏବେ ମଧ୍ୟ ମୋର ଭୟ ଆସେ । ଉଠପଡ଼ ଦୁନିଆର ଚଲାପଥରେ ଆପଣମାନେ ମୋତେ ସାହସ ଦେଇଥିଲେ ଆଗେଇ ଆସିବାପାଇଁ ।

ସେଇ ଝାଟିଘରର ବାଡପଟେ ଏବେ କୋଠାଘର ତିଆରି ହୋଇଛି । ବୟସରେ, ଅଭିଜ୍ଞତାରେ ମୁଁ ଆଉ ସେଦିନର ପିଲା ହୋଇନାହିଁ । ମୋର ସବୁବେଳେ ବିଶ୍ୱାସ ହେଉଛି, ଆପଣମାନଙ୍କର ଆଶୀଷଭରା ସ୍ନେହ ଓ ସହାନୁଭୂତି ମୋର କଣ୍ଟକିତ ଜୀବନ ପଥରେ ପୁଷ୍ପଚନ୍ଦନ ବୃଷ୍ଟି କରୁଥିବ ।

ସ୍ନେହ ଓ ଆଶୀର୍ବାଦର ପରିଶୋଧ ପାଇଁ କୌଣସି ପାର୍ଥିବ ବସ୍ତୁ ତୁଳନୀୟ ନୁହେଁ । ମୁଁ ଅବା କଅଣ ଦେଇ ପାରିବି । ମୋର ମନଗଢା "ସାହିତ୍ୟ-ବିଚାର" ଆପଣମାନଙ୍କ ହାତରେ ଦେଲି । ଗ୍ରହଣ କଲେ ସୁଖୀ ହେବି ।

ପ୍ରଣତ
**ପଠାଣି**

# ସୂଚୀ





# ସାହିତ୍ୟ ବିଚାର

## "ନବ ସଂବାଦ" ଓ ସତୁରବର୍ଷ ତଳର ଓଡ଼ିଶା

ଆଧୁନିକ ଯୁଗର ଅପ୍ରମାରମ୍ଭ କାଳରେ ଯେଉଁ ସାମାଜିକ, ରାଜନୈତିକ ଓ ସାଂସ୍କୃତିକ ବିପ୍ଳବ ଏ ଦେଶରେ ଦେଖା ଦେଇଥିଲା, ସେଗୁଡ଼ିକର ସମୁଚିତ ଆଲୋଚନା ଓ ବିଶ୍ଳେଷଣ ନ କଲେ ଆଧୁନିକ ସାହିତ୍ୟକୁ ଓ ଓଡ଼ିଆ ସମାଜର ପ୍ରଗତିର ଇତିହାସକୁ ଉପଯୁକ୍ତ ଭାବରେ ବିଚାର କରିବା ସମ୍ଭବ ନୁହେଁ । କାରଣ ଇତିହାସର ବିବର୍ତ୍ତନ ସହିତ ସାହିତ୍ୟର ବିକାଶ ଓତପ୍ରୋତ ଭାବରେ ଜଡ଼ିତ ।

ଊନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଇଂରେଜମାନେ ମରହଟ୍ଟାମାନଙ୍କ ହସ୍ତରୁ ଓଡ଼ିଶାର ଶାସନଭାର ଗ୍ରହଣ କରିଥିଲେ । ଏବଂ ତତ୍କାଳୀନ ବଙ୍ଗ ପ୍ରେସିଡେନ୍ସି ସହିତ ଓଡ଼ିଶାକୁ ସାମିଲ କରି ଦିଆଯାଇଥିଲା । ଓଡ଼ିଶା ପ୍ରଦେଶ ନାନାକାରଣରୁ ଅବହେଳିତ ହୋଇ ଶିକ୍ଷା, ସ୍ୱାସ୍ଥ୍ୟ, ଶିଳ୍ପ ଇତ୍ୟାଦି ଦିଗରେ ଅନୁନ୍ନତ ଅବସ୍ଥାରେ ପଡ଼ିରହିଥିଲା । ସେହି ଦୁଃସମୟରେ ଅନୁଦାର ସାମ୍ରାଜ୍ୟବାଦୀ ଇଂରେଜ କର୍ମଚାରୀଙ୍କ ଏବଂ ଅଣ ଓଡ଼ିଆ ଅହଂକାରୀ କଳା କର୍ମଚାରୀଙ୍କ

ଅତ୍ୟାଚାର ଓ କୁଶାସନରେ ଓଡ଼ିଆ ଭୂଖଣ୍ଡର ସ୍ୱାର୍ଥ ପଦେ ପଦେ ଅବହେଳିତ ହୋଇଥିଲା; କିନ୍ତୁ ଏ କଥା ସତ୍ୟ ଯେ ଊନବିଂଶ ଶତାବ୍ଦୀରେ ଭାରତ ବର୍ଷରେ ରାଜା ରାମମୋହନ ରାୟଙ୍କ ଭଳି ନେତାମାନଙ୍କ ନେତୃତ୍ୱରେ ଏକ ସାଂସ୍କୃତିକ ବିପ୍ଳବ ଦେଖା ଦେଇଥିଲା । ବଙ୍ଗ ପ୍ରଦେଶ ସହିତ ପଡ଼ୋଶୀ ଭାବରେ ଏବଂ ଶାସନ-ତାନ୍ତ୍ରିକ-ସୂତ୍ରରେ ଏକାଠି ଥାଇ ବିପ୍ଳବର ସେହି ସ୍ପନ୍ଦନ ଓଡ଼ିଶା ଅନୁଭବ କରିବାକୁ ଲାଗିଲା । ସେହି ଅନ୍ଧକାର ଯୁଗରେ ଆଲୋକ ବର୍ତ୍ତିକା ଜାଳିବା ପାଇଁ ଯେଉଁ କେତେକ ମହା ମନୀଷୀ ସଂସ୍କାରକ, ସାହିତ୍ୟିକ, ଧର୍ମପ୍ରବର୍ତ୍ତକ ଏବଂ ସର୍ବୋପରି ସମ୍ବାଦପତ୍ର ସବୁ କାର୍ଯ୍ୟାନୁଷ୍ଠାନ କରୁଥିଲେ ସେଗୁଡ଼ିକର ବିବରଣୀ ଲିପିବଦ୍ଧ ନ ହେଲେ ଆଧୁନିକ ଯୁଗର ଇତିହାସ ସଂକଳନ ଅପୂର୍ଣ୍ଣ ରହିଯିବ । ଏ କଥା ସତ୍ୟ ଯେ ଆଧୁନିକ ଯୁଗର ଚିନ୍ତା ଓ ଭାବଧାରାର ବୈପ୍ଳବିକ ପରିବର୍ତ୍ତନରେ ଏ ଯୁଗର ପତ୍ର ପତ୍ରିକା ସବୁଠାରୁ ଅଧିକ ସାହାଯ୍ୟ କରିଛନ୍ତି । ତେଣୁ ଆଧୁନିକ ଓଡ଼ିଆ ସାହିତ୍ୟର ଇତିହାସ ସହିତ ଊନବିଂଶ ଶତାବ୍ଦୀରେ ସାମ୍ବାଦିକତା ଓ ସମ୍ବାଦ-ପତ୍ରର ଇତିହାସ ଓତପ୍ରୋତ ଭାବରେ ବିଜଡ଼ିତ ।

ଊନବିଂଶ ଶତାବ୍ଦୀକୁ ଓଡ଼ିଆ ସମାଜ ଓ ସାହିତ୍ୟ କ୍ଷେତ୍ରରେ ଆଲୋଚକଗଣ ଅନ୍ଧକାର ଯୁଗ ନାମରେ ଆଖ୍ୟାତ କରି ଥାଆନ୍ତି; କାରଣ ସେ ଯୁଗର ପ୍ରକାଶିତ ପୁସ୍ତକ ଓ ପତ୍ର ପତ୍ରିକା ସମ୍ପର୍କରେ ବୈଜ୍ଞାନିକ ଆଲୋଚନା ବିଶେଷ ହୋଇନାହିଁ । ସେଥିପାଇଁ ସେ କାଳର ଦୁର୍ଲ୍ଲଭ ପ୍ରାଚୀନ ପତ୍ରିକାଗୁଡ଼ିକର ସଂପାଦନା ଓ ସଂକଳନ ପ୍ରଥମେ ଆବଶ୍ୟକ । ଦୁଇଶତାର୍ଦ୍ଧ କାଳର ଏହି ଅବହେଳା ମଧ୍ୟରେ ବହୁ ପ୍ରାଚୀନ ପତ୍ର ପତ୍ରିକା ସଂସାରରେ ଅଯତ୍ନତା ଦୋଷରେ ନଷ୍ଟ

ହୋଇ ପାରିବଣି । ତେବେ ୧୮୬୭ସାଲ ପରେ ଯେଉଁ କେତେକ ପତ୍ରପତ୍ରିକା ଓଡ଼ିଶାର ଜାତୀୟ ଜୀବନରେ ଅଭୂତପୂର୍ବ ପରିବର୍ତ୍ତନ ଆନୟନ କରିବାରେ ନିୟାମକ ହୋଇଥିଲେ, ସେମାନଙ୍କ ମଧ୍ୟରେ ଉତ୍କଳଦୀପିକା, ସଂବାଦବାହିକା, ଉତ୍କଳ ହିତୈଷିଣୀ, 'ନବସମ୍ବାଦ' ଓଡ଼ିଆ ଓ ନବସମ୍ବାଦ, ଉତ୍କଳପ୍ରଭା, ଉତ୍କଳ ସାହିତ୍ୟ ପ୍ରଭୃତି ବିଶେଷ ଉଲ୍ଲେଖଯୋଗ୍ୟ ।

ଏଠାରେ କେବଳ ଗୋଟିଏ ପତ୍ରିକା 'ନବ ସମ୍ବାଦ'ର ବିଚାର କରାଯାଉଛି । ଏହି ପତ୍ରିକାଟି ୧୮୮୭ସାଲ ଜାନୁଆରୀ ୨ରା ତାରିଖ ଦିନ ଶ୍ରୀଯୁକ୍ତ ନାଥବସୁଙ୍କ ସଂପାଦନାରେ ପ୍ରଥମେ କଟକରୁ ଆତ୍ମପ୍ରକାଶ କରିଥିଲା । ଏହାର ବାର୍ଷିକ ମୂଲ୍ୟ ଥିଲା ଦେଢ଼ଟଙ୍କା । ଏହି ପତ୍ରିକାର ଶିରୋନାମାରେ ମୁଦ୍ରିତ ହେଉଥିଲା 'ସତ୍ୟମେବ ଜୟତେ ନାନୃତମ୍ ତସ୍ମିନ୍ ପ୍ରୀତିଃ ତସ୍ୟ ପ୍ରିୟକାର୍ଯ୍ୟ ସାଧନଂ ଚ ତଦୁପାସନ-ମେବ' । ସେତେବେଳେ ଦୈନିକ ପତ୍ରିକା କେହି କଳ୍ପନା ସୁଦ୍ଧା କରିପାରୁ ନଥିଲେ । ଏହି ସାପ୍ତାହିକ ପତ୍ରିକାଟି ଧର୍ମନୀତି, ରାଜନୀତି, ସମାଜନୀତି, ସାହିତ୍ୟ, ଦର୍ଶନ, ବିଜ୍ଞାନାଦି ବିଷୟରେ ଆଲୋଚନା କରି ଦେଶର ସେବା କରିବେ-ବୋଲି ଘୋଷଣା କରିଥିଲେ ।

ଊନବିଂଶ ଶତାବ୍ଦୀର ଅବହେଳିତ ଉତ୍କଳରେ ବହୁତ ଦେଶୀୟ ଶତ୍ରୁ ତାହାର ପ୍ରଗତିର ପରିପନ୍ଥୀ ହୋଇଥିଲେ, ତେଣୁ ଉତ୍କଳରେ ଦେଶପ୍ରେମୀ ଆବଶ୍ୟକ ହେଉଥିଲେ । ଅତ୍ରୁଟ ଦେଶାତ୍ମବୋଧ ଓ ଜାତୀୟପ୍ରୀତି, ନବ ସମ୍ବାଦର ପ୍ରକାଶନରେ ସେ କାଳର ପ୍ରଗତି-ଶୀଳ ସଂସ୍କାରଭାବାପନ୍ନ ଉତ୍କଳୀୟ ବ୍ରାହ୍ମସମାଜର ସମର୍ଥନ

ଥିଲେହେଁ ତାହା ସଂକୀର୍ଣ୍ଣତା ଦୋଷରେ ଅଦୌ ଦୁଷ୍ଟ ହୋଇ ନ ଥିଲା । ବରଂ ଉତ୍କଳର ସାମୂହିକ କଲ୍ୟାଣପାଇଁ ଏହି ପତ୍ରିକାରେ ବାରମ୍ବାର ଅଗ୍ରଲେଖା ପ୍ରକାଶ ପାଉଥିଲା, ନବସମ୍ବାଦ ପ୍ରଥମଭାଗ ପ୍ରଥମ ସଂଖ୍ୟାରେ ନିଜର ଲକ୍ଷ୍ୟ ଘୋଷଣା କରି ଲେଖିଥିଲେ "ସୁସୁପ୍ତ ଉତ୍କଳବାସୀ ଗଭୀର ନିଦ୍ରାଭଙ୍ଗ କରି ଲକ୍ଷ ନର ନାରୀର ନୟନକୁ ଚମତ୍କୃତ କରି ନବୀନ ଭାବରେ, ନବ ତେଜରେ, 'ନବସମ୍ବାଦ' ପୃଥିବୀରେ ପ୍ରସୂତ ହେଲା, ଅଜଠାରୁ ଉତ୍କଳର ରାଜନୈତିକ ଧର୍ମ ନୈତିକ ଓ ସାମାଜିକ କ୍ଷେତ୍ରରେ ଧୀରେ ଧୀରେ ଭୀଷଣ ସଂଘର୍ଷଣର ସୂତ୍ରପାତ ହେବ ।"

ଉତ୍କଳର ପ୍ରାଚୀନ ଗୌରବ—ପ୍ରାଚୀନ ଧର୍ମଭାବ ପ୍ରାଚୀନ କୀର୍ତ୍ତିର କଥା ସ୍ୱର୍ଣ୍ଣାକ୍ଷରରେ ଲିଖିତ ହୋଇ ଅଦ୍ୟାପି ଇତିହାସର ପୃଷ୍ଠାକୁ ଉଜ୍ଜ୍ୱଳ କରୁଅଛି । ଆମ୍ଭେମାନେ ଉତ୍କଳର ସେହିସବୁ ପ୍ରାଚୀନ କୀର୍ତ୍ତି ସ୍ତମ୍ଭର ପଦତଳେ ଉପବିଷ୍ଟ ହୋଇ ନବସମ୍ବାଦ ଘୋଷଣା ଦ୍ୱାରା ନବ ଉତ୍କଳକୁ ପ୍ରତିଗନ୍ଧମୟ ପାପ ଓ କଳଙ୍କର ବିଣାଶକୁ ଉତ୍ପାଟିତ କରିବା ନିମନ୍ତେ ଅଗ୍ରସର ହେଉଅଛୁ ।

ଏହି ସଂଖ୍ୟାରେ 'ନବସମ୍ବାଦ' ଶୀର୍ଷକ ଏକ କବିତା ସମ୍ପାଦକୀୟ ସ୍ତମ୍ଭରେ ମୁଦ୍ରିତ ହୋଇଅଛି । ଏଥିରୁ ତତ୍‌କାଳୀନ ଭାରତୀୟ ସାଂସ୍କୃତିକ ଅଭ୍ୟୁଦୟ ରାଜନୈତିକ ଓ ଜାତୀୟ ଐକ୍ୟ, କୁ ସଂସ୍କାର ବିରୁଦ୍ଧରେ ବିଦ୍ରୋହ ଏବଂ ମନୋହର ବିଶ୍ୱ-ପ୍ରେମିକତାର ଆଭାଷ ମିଳୁଅଛି । କବିତାଟି ଏହିପରି —

'ଶୁଣ ନରେ ନବସମ୍ବାଦ କାଦରେ ଡେରି ଶ୍ରବଣ
ନବଯୁଗ ବିଭୁ ବିଧାନେ ଆସୁଅଛି ବହନ ।

ମଙ୍ଗଳ ବାଜଣା ବାଜୁଛି, ଶୁଣ ଭାରତ ଦ୍ୱାରେ
ଚୌଦିଗେ ଉଡ଼ୁଛି ବିଜୟ-ଧ୍ୱଜା ଅନାଅ ବାରେ,

ପ୍ରଭାତଲ୍ ଦୁଃଖ ଶର୍ବରୀ ଦେଖ ଭାରତାକାଶେ
ସ୍ୱରଗର ପ୍ରେମ ଅଲୋକ ଚଉଦିଗେ ପ୍ରକାଶେ

ହିରଣ୍ମୟ ପ୍ରେମ-କିରଣ ଦେଖ ଭାରତଶିରେ ।
ବିଚ୍ଛିନ୍ନ ବିଭିନ୍ନ ଭାରତ ଏକ ହେଉଛି ଧୀରେ ।

ବର୍ଣ୍ଣଭେଦ ଧର୍ମଭେଦର ଧନ ହେଉଛି ଶେଷ
ମହାଯୋଗେ ହେବ ଭାରତ ମହା ଭାରତ ଦେଶ ।

ପଞ୍ଜାବ ଅଯୋଧ୍ୟା ବଙ୍ଗଳା ରାଜବାଡ଼ା ଗୁର୍ଜର
ତୈଲଙ୍ଗ କର୍ଣ୍ଣାଟ ଉତ୍କଳ ମହାରାଷ୍ଟ୍ର ସଙ୍ଗର ।

ଗାଉଛନ୍ତି ମହା ସଂଗୀତ ଜୟ ଭାରତ ଜୟ
ଏକଜାତି ଅମ୍ଭେ ସରବେ ଡେବେ ଅଉ କା ଭୟ ।

ପୁଣି ଶୁଣ, ନବସମ୍ବାଦ ସର୍ବେ ଉଲ୍ଲାସେ ମାତି
ଭମାନ, ବିଶ୍ୱବିଧାତା ଏକ ମାନବ ଜାତି ।

ଏସିଆ ୟୁରୋପ ଆଫ୍ରିକା ଅମେରିକା ସଙ୍ଗତେ
ସମ୍ମିଳିତ ହୋଇଅଛନ୍ତି ପ୍ରେମବିଧାନ ମତେ

ପୂରୁବ ପଶ୍ଚିମ ଉତ୍ତର ପୁଣି ଦକ୍ଷିଣ ଆଶା
ଗାଉଛନ୍ତି ପ୍ରେମ-ସଙ୍ଗୀତ କିବା ଅମୃତଭାଷା,

ପୃଥିବୀ ଡ଼ାକଇ ସକଳେ ଶୁଣ ଜଗତବାସୀ
ମୋ ଜନମୀ ତୁମ୍ଭ ଜନମୀ ହୁଅ ପ୍ରେମେ ବିଶ୍ୱାସୀ ।

ଏହି କବିତାଟି ସେକାଳର ଯୁଗବିପ୍ଳବର ଏକ ଆଭିମୁଖ୍ୟ ବୋଲି ଧାରଣା କଲେ କିଛି କ୍ଷତି ହେବ ନାହିଁ ବରଂ ବହୁକାଳରୁ

ପରାଧୀନ କୁସଂସ୍କାର-ବିଜଡ଼ିତ-ଉତ୍କଳ ପ୍ରାନ୍ତରେ ଏକ ନବଯୁଗର ସୂଚନା ମିଳୁଛି ଏହି କବିତାରୁ ।

ଊନବିଂଶ ଶତାବ୍ଦୀର ଶେଷଭାଗରେ ଓଡ଼ିଶାରେ କ୍ରମଶଃ ଉଚ୍ଚ ଶିକ୍ଷାର ପ୍ରସାର ହୋଇଥିଲା । ଯେଉଁମାନେ ପାଶ୍ଚାତ୍ୟ ଶିକ୍ଷାରେ ଆଲୋକିତ ହେଲେ, ସେମାନଙ୍କର ମନୋରାଜ୍ୟରେ ଅଭାବନୀୟ ଭାବବିପ୍ଳବ ଜାତ ହେବା ସ୍ୱାଭାବିକ; କିନ୍ତୁ ଏହି ଭାବବିପ୍ଳବ ଅନେକ କ୍ଷେତ୍ରରେ ଉଚ୍ଛୃଙ୍ଖଳତାରେ ପର୍ଯ୍ୟବସିତ ହୋଇଥିଲା । ସେ ଯୁଗର ବିଶିଷ୍ଟ ସାହିତ୍ୟିକ ବିଶ୍ୱନାଥ କରଙ୍କ ଶିକ୍ଷାସିଲ୍ଲା ପ୍ରବନ୍ଧ ଓ ଔପନ୍ୟାସିକ ଫକୀରମୋହନଙ୍କ 'ହାଟବାହୁଡ଼ା' କବିତା ଏବଂ ଗଳ୍ପ ଉପନ୍ୟାସ ପାଠ କଲେ ଶିକ୍ଷିତ ଯୁବକମାନେ କିପରି ନାନା ଅନୀତିକର କାର୍ଯ୍ୟରେ ଲିପ୍ତ ରହି ନାସ୍ତିକ ମନୋଭାବ ବରଣ କରୁଥିଲେ, ଭାରତୀୟ ଉଜ୍ଜ୍ୱଳପରମ୍ପରାକୁ ସମ୍ମାନ ନ ଜଣାଇ ପାଶ୍ଚାତ୍ୟ ସଭ୍ୟତାର ଅନ୍ଧାନୁସରଣ କରୁଥିଲେ ବହୁକ୍ଷେତ୍ରରେ ତା'ର ପ୍ରମାଣ ମିଳେ । ଅଥଚ ଦେଶରେ ଏହି ନୂଆ ବାବୁଗୋଷ୍ଠୀଙ୍କ-ଠାରୁ ଜାତି ଓ ସମାଜ ବହୁତକିଛି ଆଶା କରୁଥିଲା । ଏହି ବାବୁମାନଙ୍କ ଉଦ୍ଦେଶ୍ୟରେ ବ୍ୟଙ୍ଗୋକ୍ତିପୂର୍ଣ୍ଣ, 'କଳିଯୁଗର ବାବୁରୂପୀ ଏକାଦଶ ଅବତାର' ଶୀର୍ଷକ ଏକ ରଚନା ଏଠାରେ ପ୍ରଣିଧାନ ଯୋଗ୍ୟ ।

× × ×

କଳିଯୁଗେ ବାବୁରୂପୀ ଅବତାର ହେବେ
ଏକାଦଶ ଅବତାର ନାମ ବୋଲାଇବେ ।

× × ×

ଶିଖିବେ ପାଶ୍ଚାତ୍ୟ ବିଦ୍ୟା ସ୍ୱତନ୍ତ୍ରମାନ
ଅର୍ଥକାରୀ ବିଦ୍ୟା ବୋଲି କରିବେ ଗ୍ରହଣ ।

ଶିକ୍ଷାଗୁରୁ ଦୀକ୍ଷାଗୁରୁ ବଲିତ ତାଙ୍କର
ଯେଉଁ ମନ୍ତ୍ର ଦେବେ କର୍ଣ୍ଣେ ସେହି ହେବ ସାର ।
କେହି ଅଧା, କେହି ପୂରା ଇଂରେଜୀ ଶିଖିବେ
ଭୋଜନେ, ଶୟନେ ସ୍ୱପ୍ନେ ନ ବୋଲିକୁ ଛାଡ଼ିବେ ।
ଘରେ ବସି ବୋଲାଇବେ ବଲିତ ଫିରଙ୍ଗୀ
ବେଗ୍ର କରିବେ ଇଂରେଜୀରେ କଥାବାର୍ତ୍ତା । (୧)

ଶିକ୍ଷିତ ବାବୁମାନଙ୍କର ଏ ଦିଗରେ ଅବଶ୍ୟ ବସନ୍ତେ ଦେଶରେ ଉଚ୍ଚଶିକ୍ଷା ପାଇଁ ପ୍ରବଳ ଆଗ୍ରହ ପ୍ରକାଶ ପାଇଥିଲା । ଉଚ୍ଚଶିକ୍ଷା ନ ପାଇଲେ ସରକାରୀ ଦପ୍ତରରେ ଉପଯୁକ୍ତ ପଦ ମିଳିପାରିବ ନାହିଁ ବୋଲି ପ୍ରତ୍ୟେକେ ଅନୁଭବ କରୁଥିଲେ । ତେଣୁ ଫକୀରମୋହନଙ୍କ ଉପନ୍ୟାସରେ ଜମିଦାରଙ୍କଠାରୁ ଆରମ୍ଭ କରି ସାଧାରଣ ଗୁମାସ୍ତା ଏବଂ ପୋଷ୍ଟ ପିଅନ ପର୍ଯ୍ୟନ୍ତ ସବୁଶ୍ରେଣୀର ଲୋକେ ନିଜେ ଇଂରେଜୀ ନ ପଢ଼ି ମଧ୍ୟ ସନ୍ତାନମାନଙ୍କୁ ଇଂରେଜୀ ପାଠ ପଢ଼ାଇବା ପାଇଁ ଯତ୍ନ କରି ଆସିଛନ୍ତି । ସେ କାଳରେ ଶିକ୍ଷା ସଂପର୍କରେ ଆଲୋଚନା କରି ଲେଖାଯାଇଛି । ଉଚ୍ଚଶିକ୍ଷା ବୋଇଲେ ଏଣ୍ଟ୍ରେନ୍ସଠାରୁ ଆରମ୍ଭ କରି ଏମ. ଏ. ପର୍ଯ୍ୟନ୍ତ ଏବଂ ମେଡିକାଲ, ଇଞ୍ଜିନିୟରିଂ ପ୍ରଭୃତି କଲେଜ ଅବଶ୍ୟ ଆମ୍ଭମାନଙ୍କର ଏ ପ୍ରଦେଶରେ ଆଦୌ ନାହିଁ । ଏଣ୍ଟ୍ରେନ୍ସ ସ୍କୁଲ ସର୍ବସୁଦ୍ଧା ୧୧ଟି; କଟକ ସହରରେ ୫ ଏବଂ ଯାଜପୁର, କେନ୍ଦ୍ରାପଡ଼ା ବାଲେଶ୍ୱର ସହର, ଲକ୍ଷ୍ମଣନାଥ, ଭଦ୍ରଖ, ପୁରୀ ଏହି ସ୍ଥାନମାନଙ୍କରେ ପ୍ରତ୍ୟେକରେ ଗୋଟିଏ ଲେଖାଏଁ । କଲେଜ ମଧ୍ୟରେ କେବଳ କଟକ ରେଭେନ୍ସା କଲେଜ । ଉକ୍ତ କ୍ଲାସରେ ଏମ. ଏ କ୍ଲାସ ପର୍ଯ୍ୟନ୍ତ ଫିଟିଅଛି ସତ୍ୟ; କିନ୍ତୁ

(୧) ଉଡ଼ିଆ ଓ ନବସମ୍ବାଦ'—୧୮ । ୩ । ୧। ୯୧

ଗୋପାଳବାବୁଙ୍କ ପୂର୍ବ ପର୍ଯ୍ୟନ୍ତ ଏମ୍. ଏ ପରୀକ୍ଷାରେ କେହି କୃତକାର୍ଯ୍ୟ ହୋଇ ନାହାନ୍ତି । ଏମ୍. ଏ. ର ରୀତିମତ ଶ୍ରେଣୀ କିମ୍ବା ଏମ୍. ଏ ପଢ଼ାଇବାର କୌଣସି ବନ୍ଦୋବସ୍ତ ନାହିଁ । ଏହା ହେଉଛି ମାତ୍ର ସତୁରୀ ବର୍ଷ ତଳର କଥା । ସେତେବେଳେ ସମଗ୍ର ଓଡ଼ିଆଭାଷା ଅଞ୍ଚଳରେ ଜଣେମାତ୍ର ଏମ୍. ଏ ପାସ କରିଥିବା ଯୁବକ ହେଉଛନ୍ତି ବିଖ୍ୟାତ ଭୀମାଭୂୟାଁ ଉପନ୍ୟାସର ଲେଖକ ଗୋପାଳ ବଲ୍ଲଭ ଦାସ । ସେ ଏମ୍. ଏ ପାସ କଲେ ପରେ ସମଗ୍ର ଜାତି ତାଙ୍କପାଇଁ ଗର୍ବ କରିଥିଲା । କାରଣ ଶିକ୍ଷାର ଅଭାବ ଥିବାରୁ ବାହାର ପ୍ରଦେଶର ଲୋକେ ଏ ଅଞ୍ଚଳରେ ଶାସନ ଡୋରିକୁ ନିୟନ୍ତ୍ରଣ କରୁଥିଲେ । ସେମାନେ ଶୋଷକର ମନୋଭାବ ନେଇ ଆସିଥିବାରୁ ସ୍ଥାନୀୟ ସମସ୍ୟା ପ୍ରତି ସେମାନଙ୍କର ସମ୍ମାନ ଅଥବା ସହାନୁଭୂତି ଆଦୌ ନ ଥିଲା । ତେଣୁ ସରକାରୀ ଦପ୍ତରରେ ନିଯୁକ୍ତି ବେଳେ ଉତ୍ତରପ୍ରାନ୍ତୀୟ ମନୋଭାବ ପ୍ରକାଶ ଲାଭକରିବା ସ୍ୱାଭାବିକ । ସେତେବେଳେ କଟକର ସବ୍‌ଜଜ୍ କୋର୍ଟ ଅଦାଲତରେ ହେଡ୍‌କ୍ଲର୍କ ପଦରେ ବଙ୍ଗ ଦେଶର ଏକଜଣ ବି.ଏ. ଉପାଧିଧାରୀଙ୍କୁ ନିଯୁକ୍ତ କରିବାରୁ ସ୍ଥାନୀୟ କେତେଜଣ ଗ୍ରାଜୁଏଟ ଗଭର୍ଣ୍ଣମେଣ୍ଟଙ୍କ ଛାମୁକୁ ମେମୋରିଏଲ ପଠାଇ ଅଛନ୍ତି । ଯଥାର୍ଥରେ ଦେଶୀୟ ଉପଯୁକ୍ତ ଲୋକ ଥିବାସତ୍ତ୍ୱେ ଦୂରସ୍ଥାନରୁ ଏକଜଣ ଲୋକ ଆଣିବା ଅତ୍ୟନ୍ତ ଅବିଚାରର କାର୍ଯ୍ୟ ହୋଇଅଛି । ସବ୍‌ଜଜ ମହାଶୟ କି ଯୋଗ୍ୟତା ଦେଖି ତାହାଙ୍କୁ ନିଯୁକ୍ତକରି ଅଛନ୍ତି ତାହା ତାହାଙ୍କୁ ଗୋଚର । (୩) କେବଳ ସେତିକି ନୁହେଁ, ଆଧୁନିକ ଓଡ଼ିଆ ସାହିତ୍ୟରେ ସୁପରିଚିତ ବିଜୟଚନ୍ଦ୍ର ମଜୁମଦାର ପ୍ରଥମେ ବାମଣ୍ଡାରେ ରାଜଶିକ୍ଷକ

---

(୩) ନବସମ୍ବାଦ—୨୩ । ୧୧ । ୧୮୮୭

ଥିଲେ । ପରବର୍ତ୍ତୀ କାଳରେ ସେ ପୁରୀଜିଲ୍ଲା ସ୍କୁଲରେ ଶିକ୍ଷକ ପଦରେ ନିଯୁକ୍ତି ଲାଭ କରିବାରୁ ତତ୍କାଳୀନ ପତ୍ରପତ୍ରିକାରେ ଜଣେ ଅଣଓଡ଼ିଆ ନିଯୁକ୍ତି ପାଇଲେ ବୋଲି ଆନ୍ଦୋଳନ ହୋଇଥିଲା । ବିଶେଷତଃ ମଜୁମଦାର ବାବୁ ବ୍ରାହ୍ମ ଥିବାରୁ ଏହି ନିଯୁକ୍ତିରେ ପରୋକ୍ଷରେ ଶିକ୍ଷା ବିଭାଗର କ୍ଷମତାପ୍ରାପ୍ତ କର୍ମଚାରୀ ବ୍ରାହ୍ମ ମଧୁସୂଦନଙ୍କ ସମର୍ଥନ ଅଛି ବୋଲି ଅଭିଯୋଗ ପ୍ରକାଶିତ ହୋଇଥିଲା । ଏହି ଘଟଣାର ସବିଶେଷ ଆଲୋଚନା କରି ନବସମ୍ବାଦ ସୁଚିନ୍ତିତ ମତ ପ୍ରକାଶ କରିଥିଲେ । (୦) ସେହି ସମୟରେ ବନ୍ଦୋବସ୍ତ କାର୍ଯ୍ୟ ଚାଲିଥିଲା । ସରକାରୀ ଉଚ୍ଚ ମହଲରେ ଅଣଓଡ଼ିଆ କର୍ମଚାରୀ ପ୍ରତିଷ୍ଠିତ ଓ ପ୍ରଭାବଶାଳୀ ଥିବାରୁ ମୁଷ୍ଟିମେୟ ଶିକ୍ଷିତ ଓଡ଼ିଆମାନଙ୍କପାଇଁ ମଧ୍ୟ ଓଡ଼ିଶାରେ ସ୍ଥାନ ମିଳୁ ନ ଥିଲା । ସେଥିପାଇଁ ଯେ କୌଣସି ସମାନ୍ୟ ନିଯୁକ୍ତି ପ୍ରଶ୍ନ ଉଠିଲେ ସେଠାରେ ଓଡ଼ିଆ ଲୋକେ ସ୍ଥାନ ପାଇବାପାଇଁ ସେ କାଳର ସମସ୍ତ ପତ୍ରପତ୍ରିକା ଦାବୀ କରୁଥିଲେ । ଅନୁଗୁଳ ବନ୍ଦୋବସ୍ତରେ ଓଡ଼ିଆମାନେ ସେଥିଁ କାର୍ଯ୍ୟ କରିବା ପାଇଁ ଉପଯୁକ୍ତ ଅଛନ୍ତି ସେତିକି ମଧ୍ୟ ସେମାନଙ୍କୁ ନ ମିଳି ହିନ୍ଦୁସ୍ଥାନୀ ଏବଂ ବଙ୍ଗୀୟ କର୍ମଚାରୀଙ୍କୁ ଯୋଗାଇ ଦିଆ ଯିବାରୁ ସଂବାଦବାହିକା ଓ ଉତ୍କଳ-ଦୀପିକା ଭଳି ବିଖ୍ୟାତ ପତ୍ରିକା ସମାଲୋଚନା କରିଥିଲେ । ଏହି ମତବାଦକୁ ସମର୍ଥନ କରି ନବସମ୍ବାଦ ମଧ୍ୟ ନିଜର ଅଗ୍ରଲେଖା ପ୍ରକାଶ କରିଥିଲେ । (୫)

ସେତେବେଳେ ଜଣେ ଅଣଓଡ଼ିଆଙ୍କ କର୍ମପ୍ରାପ୍ତିରେ ଯେତିକି ତିକ୍ତ ଲୋକମତ ପ୍ରକାଶ ପାଇଛି, ଓଡ଼ିଆଙ୍କ ଉଚ୍ଚସମ୍ମାନ ଲାଭରେ

---

(୦) ନବସମ୍ବାଦ—୧୦ । ୧୧ । ୧୮୮୭

(୫) ନବସମ୍ବାଦ—୧୦ ।୩। ୧୮୭

ସେହି ପରିମାଣରେ ଗୌରବ ମଧ୍ୟ ଅର୍ଜିତ ହୋଇଅଛି । ଓଡ଼ିଶାରେ ପ୍ରଥମ ଏମ୍. ଏ ବାବୁ ଗୋପାଳବଲ୍ଲଭ ଦାସ ଡେପୁଟି କର୍ମରେ ଅବସ୍ଥାପିତ ହେବାରୁ ବିଖ୍ୟାତ ସାପ୍ତାହିକ 'ନବସମ୍ବାଦ' ବଙ୍ଗ ଲାଟଙ୍କୁ କୃତଜ୍ଞତା ଜଣାଇ ଏହା ଅବଶ୍ୟ ଓଡ଼ିଶାବାସୀଙ୍କ ପ୍ରତି ଗୌରବର ବିଷୟ ବୋଲି ଉଲ୍ଲେଖ କରିଛନ୍ତି । (୭)

ଓଡ଼ିଶାରେ ଉଚ୍ଚ ଶିକ୍ଷାର ପ୍ରସାର ମନ୍ଥର ଗତିରେ ହେବାର ଅନ୍ୟତମ କାରଣ ଏ ଦେଶର ରକ୍ଷଣଶୀଳ ବ୍ରାହ୍ମଣସମାଜ । ସେମାନେ ସମାଜରେ ଅଧିକ ପ୍ରଭାବଶାଳୀ ଏବଂ ସଂସ୍କୃତିସମ୍ପନ୍ନ ଥିବାରୁ ଯେ କୌଣସି ପରିବର୍ତ୍ତନ ପ୍ରତି ସେମାନଙ୍କର ପ୍ରତିକ୍ରିୟା ଅଧିକ ଫଳପ୍ରଦ ହେଉଥିଲା । ସେ କାଳରେ ନୂତନ ପ୍ରବର୍ତ୍ତିତ ଇଂରେଜୀ ଶିକ୍ଷାକୁ ବ୍ରାହ୍ମଣମାନେ ସନ୍ଦେହଦୃଷ୍ଟିରେ ବିଚାର କଲେ । ଉଚ୍ଚଶିକ୍ଷା ପାଇଁ ବିଲାତ ଗଲେ ଜାତି ହରାଇବାକୁ ପଡ଼ୁଥିଲା । ବ୍ରାହ୍ମଣମାନେ ଇଂରେଜୀ ଶିକ୍ଷାପ୍ରତି ଧର୍ମହାନି ଭୟରେ ସତତ ପରାଙ୍ମୁଖ ଥିଲେ । ତେଣୁ ବହୁକାଳ ଯାବତ୍ ବ୍ରାହ୍ମଣସମାଜରେ କେହି ଇଂରେଜୀ ପଦ୍ଧତିରେ ଉଚ୍ଚ ଶିକ୍ଷିତ ବାହାରି ପାରିଲେ ନାହିଁ । ଯେଉଁ କେତେଜଣ ବ୍ରାହ୍ମଣଯୁବକ ସମାଜର ନାଲି ଆଖିକୁ ଏଡ଼ିଦେଇ ଉଚ୍ଚଶିକ୍ଷା ଲାଭ କରିଥିଲେ ସେମାନେ ନାନା ନିର୍ଯାତନାର ସମ୍ମୁଖୀନ ହୋଇଥିଲେ ହେଁ ଉତ୍କଳ-ହିତୈଷୀ ପତ୍ର-ପତ୍ରିକା ସେମାନଙ୍କର ଉଚ୍ଛ୍ୱସିତ ପ୍ରଶଂସା କରି ସମାଜର ଦୃଷ୍ଟି ଆକର୍ଷଣ କରିଥିଲେ । ଉତ୍କଳର ବ୍ରାହ୍ମଣମାନଙ୍କ ମଧ୍ୟରେ ପ୍ରଥମ ଗ୍ରାଜୁଏଟ ହେଉଛନ୍ତି ପୁରୀର ହରବଂସିଂହ ମିଶ୍ର । ତାଙ୍କ ପ୍ରତି ସମ୍ବର୍ଦ୍ଧନା ଜଣାଇ, ନବସମ୍ବାଦ'

---

(୭) ନବସମ୍ବାଦ—୨୩ । ୧ । ୧୮୮୭

ଲେଖିଥିଲେ – ଉତ୍କଳୀୟ ବ୍ରାହ୍ମଣମାନଙ୍କ ମଧ୍ୟରୁ ଆଜଯାଏ କେହି ବି,ଏ ପାସ କରି ନଥିଲେ । ଏ ବର୍ଷ ପୂର୍ବରୁ ଶ୍ରୀ ହରବଂଶ ମିଶ୍ରଙ୍କୁ ଉକ୍ତ ପରୀକ୍ଷାରେ ପରୀକ୍ଷୋତ୍ତୀର୍ଣ୍ଣ ହୋଇଥିବାର ଦେଖି ଆମ୍ଭେମାନେ ଅତିଶୟ ସୁଖୀ ହୋଇଅଛୁ । ଉତ୍କଳୀୟ ବ୍ରାହ୍ମଣମାନଙ୍କୁ ଆମ୍ଭମାନଙ୍କର ଅନୁରୋଧ ଯେ ସେମାନେ ଏହାଙ୍କୁ ଏବିଷୟରେ ଅନୁକରଣ କରିବା ନିମିତ୍ତ ପ୍ରୟାସୀ ହେଉନ୍ତୁ । ( ୬ )

ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଜାତୀୟତାର ବନ୍ୟା ଏ ଦେଶର ପ୍ରତ୍ୟେକ ସ୍ତରରେ ପ୍ରବାହିତ ହୋଇଥିଲା । ଦେଶର ସର୍ବାଙ୍ଗୀନ ଉନ୍ନତି ପାଇଁ ଧୀରେଧୀରେ ଦାବୀ ହେଉଥିଲା ଏବଂ ପଡ଼ୋଶୀ ପ୍ରଦେଶଗୁଡ଼ିକ ଇଂରେଜୀ ଶିକ୍ଷା ସଭ୍ୟତାର ସୁଯୋଗ ନେଇ ଅଧିକ ଅଗ୍ରସର ହୋଇ ଯାଉଥିବାରୁ ପ୍ରବଳ ବ୍ୟାକୁଳତା ପ୍ରକାଶ ପାଉଥିଲା । ବିଶେଷତଃ ଓଡ଼ିଶାର ଭାଗ୍ୟ ଅନ୍ୟପ୍ରାନ୍ତରେ ନିର୍ଦ୍ଧାରଣ ହେଉଥିବାରୁ ତାହାର ଭାଷା, ସାହିତ୍ୟ ଏବଂ ସମାଜିକ ପ୍ରଗତି ପଦେ ପଦେ ଅବହେଳିତ ହେବାର ଆଶଙ୍କା ପ୍ରକାଶିତ ହେଉଥିଲା । ମୁଦ୍ରାଯନ୍ତ୍ରର ପ୍ରଭାବରେ ଆଧୁନିକ ସାହିତ୍ୟ ପ୍ରଚୁର ଲାଭ କରିବାର କ୍ଷେତ୍ର ପ୍ରଶସ୍ତ ହେବାରୁ ତହିଁ ପ୍ରତି ସମଧିକ ଆଦର ପ୍ରକାଶ ପାଇବା ସ୍ୱାଭାବିକ ।

ବିଦେଶୀ ଭାଷା ଓ ସାହିତ୍ୟ ବଦଳରେ କଲିକତା ବିଶ୍ୱବିଦ୍ୟାଳୟରେ ଦେଶୀୟ ଭାଷାର ଚର୍ଚ୍ଚା ପାଇଁ ପ୍ରସ୍ତାବ ହେବାରୁ ନବସମ୍ବାଦ ଆନନ୍ଦ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଓଡ଼ିଆ ଭାଷାର ସ୍ୱାର୍ଥରକ୍ଷା ହେଉ ବୋଲି ଦାବୀ କରିଥିଲେ । ନବସମ୍ବାଦ ଲେଖିଥିଲେ—'ବର୍ତ୍ତମାନ କଲିକତା ବିଶ୍ୱବିଦ୍ୟାଳୟରେ ଯେପରି

(୬) ନବସମ୍ବାଦ — ୨ । ୬ । ୧୮୭୬

ପ୍ରସ୍ତାବମାନ ହେଉଅଛି ସେଥିରେ ଦେଶୀୟ ଭାଷାମାନଙ୍କର ଉନ୍ନତି ହେବାର ସମ୍ଭାବନା ବୋଧ ହେଉଅଛି । ଭାରତବର୍ଷର ବିଶ୍ୱବିଦ୍ୟାଳୟମାନଙ୍କରେ ଆଜଯାଏଁ କେବଳ ବିଦେଶୀୟ ଭାଷା ଏବଂ ମୃତପ୍ରାୟ ସଂସ୍କୃତଭାଷାର ପୁସ୍ତକମାନ ପଠିତ ହେଉଅଛି । ଦେଶୀୟ କୌଣସି ଭାଷାର ଆଶାନୁରୂପ ଆଲୋଚନା ହେଉ ନାହିଁ । ମାତୃଭାଷାରେ ପାଠ ଏବଂ ପରୀକ୍ଷାପୋଯୋଗୀ ଉଚ୍ଚଦରର ସଦ୍‌ଗ୍ରନ୍ଥ ନାହିଁ କହିଲେ ଚଳେ । ଏହା ଅବଶ୍ୟ ଭାରତ ଅନୁନ୍ନତିର ଗୋଟିଏ କାରଣ । ଯାହାହେଉ ଭାରତବନ୍ଧୁ ହଣ୍ଟର ସାହେବ ପ୍ରସ୍ତାବ କରି ଅଛନ୍ତି ଯେ ବିଶ୍ୱବିଦ୍ୟାଳୟରୁ ପ୍ରତିବର୍ଷ ଯେଉଁ ଟଙ୍କା ଉଦ୍‌ବୃତ୍ତ ହୁଏ, ସେହି ଟଙ୍କାରେ ବଙ୍ଗଳାର ନୂତନ ଏବଂ ପୁରାତନ ଭଲ ପୁସ୍ତକ ସବୁ ମୁଦ୍ରିତ କରି ତାହା ବିଶ୍ୱବିଦ୍ୟାଳୟରେ ପ୍ରଚଳିତ କରାଯାଉ । ଏ ପ୍ରସ୍ତାବଟି ଉତ୍ତମ । ମାତ୍ର ଏଥିରେ କେବଳ ବଙ୍ଗଳା ଭାଷାର ଉଲ୍ଲେଖ ଥିବାରୁ ଆମ୍ଭମାନଙ୍କର ଭୟ ହେଉଅଛି ହୁଏତ ଓଡ଼ିଆ ଭାଷାପ୍ରତି ଆଉ କାହାରି ଦୃଷ୍ଟି ପଡ଼ିବ ନାହିଁ । ଆମ୍ଭେମାନେ ବିଶ୍ୱବିଦ୍ୟାଳୟର ସିଣ୍ଡିକେଟକୁ ପ୍ରାର୍ଥନା କରୁଅଛୁ ଯେ ସେମାନେ ହଣ୍ଟର ସାହେବଙ୍କ ପ୍ରସ୍ତାବକୁ ବିଚାର କଲାବେଳେ ଓଡ଼ିଆ ଭାଷା ପ୍ରତି ଦୃଷ୍ଟି ରଖିବେ ।' (୮) ସେହି କାଳରେ ଓଡ଼ିଆ ଭାଷାକୁ ଲୋପ କରି ତା ବଦଳରେ ବଙ୍ଗଳାଭାଷାକୁ ପ୍ରଚଳନ କରିବାପାଇଁ ଯେଉଁ ଚକ୍ରାନ୍ତ ହୋଇଥିଲା, ତାହା ଇତିହାସ ପାଠକମାନଙ୍କୁ ଅବିଦିତ ନାହିଁ । ତେଣୁ ପ୍ରତ୍ୟେକ କ୍ଷେତ୍ରରେ ଓଡ଼ିଆଭାଷା ଓ ସାହିତ୍ୟର ମର୍ଯ୍ୟାଦା ରକ୍ଷାପାଇଁ ତତ୍କାଳୀନ ସମାଜ ସଚେତନ ଥିଲା । ଓଡ଼ିଆ-ଭାଷାରେ ଉପଯୁକ୍ତ ପାଠ୍ୟପୁସ୍ତକ ସୁଲଭ ନ ଥିଲା । ମଧୁସୂଦନ,

---

(୮) ନବସମ୍ବାଦ — ୨୪ । ୩ । ୧୮୮୭

ରାଧାନାଥ, ଫକୀରମୋହନ ପ୍ରଭୃତି ଏହି ଅଭାବ ଦୂର କରିବାପାଇଁ ସମଧିକ ଚେଷ୍ଟା କରିଥିବା ଜଣାଯାଏ ।

ଏହି ସମୟରେ ବ୍ରାହ୍ମଣଯୁବକ ବିଶ୍ବନାଥ କର ବ୍ରାହ୍ମଧର୍ମ ଗ୍ରହଣ କରିବାରୁ ପତ୍ରପତ୍ରିକାରେ ଚହଳ ପଡ଼ିଯାଇଥିଲା । ଅନେକ ମନେ କରୁଥିଲେ ଯେ ପାଶ୍ଚାତ୍ୟଶିକ୍ଷାର ପ୍ରସାର ଫଳରେ ଶିକ୍ଷିତ ଯୁବକଗଣ ନାନା ଧର୍ମହାନିକର କାର୍ଯ୍ୟ କରୁଅଛନ୍ତି । ଏ କଥା ସତ୍ୟ ଯେ ତତ୍କାଳୀନ ସମାଜରେ ଅନେକେ ବ୍ରାହ୍ମଧର୍ମାବଲମ୍ବୀ ଅତ୍ୟନ୍ତ ପ୍ରଗତିଶୀଳ ସଂସ୍କାରଭାବାପନ୍ନ ଏବଂ ପ୍ରଭାବଶାଳୀ ବ୍ୟକ୍ତି ଥିଲେ । ସେମାନଙ୍କ ସମାଜରେ ଉଚ୍ଚଶିକ୍ଷାର ଅଧିକ ପ୍ରସାର ହିଁ ଏହାର କାରଣ । ମଧୁସୂଦନ ରାଓ ଜଣେ ଆଦର୍ଶ ବ୍ରାହ୍ମ ଥିଲେ ଏବଂ ଭିକ୍ଟୋରିଆ ହାଇସ୍କୁଲ ପ୍ରତିଷ୍ଠା କରିଥିଲେ । ତେଣୁ ସେଠାରେ ବ୍ରାହ୍ମ ଧର୍ମ ପ୍ରଚାର ହେଉଛି ବୋଲି କେତେକ ପତ୍ରିକା ଅଭିଯୋଗ କରିଥିଲେ । ବ୍ରାହ୍ମଧର୍ମ ହିନ୍ଦୁଧର୍ମର ଏକ ସଂସ୍କାରମାତ୍ର ହେଲେହେଁ ସେତେବେଳେ ଅନେକ ବ୍ରାହ୍ମ ଅତ୍ୟନ୍ତ ହିନ୍ଦୁବିଦ୍ୱେଷ ମନୋଭାବ ଗ୍ରହଣ କରି ହିନ୍ଦୁଧର୍ମକୁ ନାନା ସ୍ଥାନରେ ଉପହସିତ କରିବାପାଇଁ ଉଦ୍ୟମ କରୁଥିଲେ । ପ୍ରସିଦ୍ଧ ସମ୍ପାଦକ ଓ ସାହିତ୍ୟିକ ବିଶ୍ବନାଥ-କରଙ୍କ ପ୍ରବନ୍ଧାବଳୀ ପାଠ କଲେ ଅନେକ ସ୍ଥଳରେ ସେ ହିନ୍ଦୁଧର୍ମକୁ କଠୋର ଭାବରେ ଆକ୍ଷେପ ଏବଂ ସମାଲୋଚନା କରିଥିବା ଜଣାଯାଏ । ସେହି ସମୟରେ ଜନୈକ ବ୍ରାହ୍ମଧର୍ମୀ ଉପୋଟିବାରୁ ପୁରୀର ଶ୍ରୀମନ୍ଦିରରେ ପ୍ରବେଶ କରି ଶ୍ରୀ ଜିଉଙ୍କ ପ୍ରସାଦ ଫୁଲ ଗ୍ରହଣ ନ କରି ଅସମ୍ମାନ ପ୍ରଦର୍ଶନ କରିଥିଲେ । ଏହି ଘଟଣାଟି ବିଖ୍ୟାତ 'ଉତ୍କଳଦୀପିକା' ପତ୍ରିକାରେ ଭୟଙ୍କର ସମାଲୋଚିତ ହୋଇଥିଲା । 'ନବସମ୍ବାଦ' ବ୍ରାହ୍ମଧର୍ମୀମାନଙ୍କୁ ସମର୍ଥନ କରୁଥିଲେହେଁ ଏ କ୍ଷେତ୍ରରେ

ଉଦାରତା ତଥା ଧର୍ମଗତ ସହଣିକତା ପ୍ରଦର୍ଶନ କରିବାକୁ ପରାମର୍ଶ ଦେଇ 'ଦୀପିକା'ଙ୍କ ସମାଲୋଚନାକୁ ସମର୍ଥନ କରିଥିଲେ । ନବ-ସମ୍ବାଦ ଲେଖିଥିଲେ— 'ବାସ୍ତବିକ ଯେଉଁମାନେ ପ୍ରସାଦ ଗ୍ରହଣ ନ କରିବେ, ସେମାନଙ୍କର ଦେଉଳକୁ ଯିବାର ସେତେ ଆବଶ୍ୟକତା ତାହା କିଛି ସ୍ଥିରକର ହେଉନାହିଁ । ଉପୋଷ୍ଟିବାବୁ ବୋଧହୁଏ ଜାଣନ୍ତି ଯେ ବ୍ରାହ୍ମମାନଙ୍କର ଏପରି ସ୍ଥଳରେ ପ୍ରବେଶ କରିବାର ଉଚିତ ନୁହେଁ; କିନ୍ତୁ ଜାଣି ଅଜଣା ହୋଇ ଲୋକଙ୍କ ମନରେ ଏପରି କଷ୍ଟ ଦେବା ଅତ୍ୟନ୍ତ ଅବିବେଚକର କାର୍ଯ୍ୟ ହୋଇଅଛି । ବ୍ରାହ୍ମଭାଇ-ମାନଙ୍କର ପରର ଧର୍ମ ପ୍ରତି ଏପରି ତାଚ୍ଛିଲ୍ୟଭାବ ଦେଖାଇବାର ଉଚିତ ନୁହେଁ । ଜଗତରେ ଅଭ୍ରାନ୍ତ କେହି ନୁହନ୍ତି । ସାକାର ଉପାସକମାନେ ଭ୍ରାନ୍ତ ହେଲେ ସୁଦ୍ଧା ସେମାନଙ୍କର ଧର୍ମପ୍ରତି ଏପରି ଆକ୍ରମଣ ଯୁକ୍ତିଯୁକ୍ତ ନୁହଇ । (୯)

ସ୍ୱାଧୀନତା ଲାଭ ପରେ ଭାରତବର୍ଷରେ ସରକାରୀ ଉତ୍ସବ ଏବଂ ଲୋକପ୍ରତିନିଧିମାନଙ୍କ ଆଡ଼ମ୍ବର ଆୟୋଜନ ଲକ୍ଷ୍ୟ କଲେ ବେଳେ ବେଳେ ମନରେ ଦୁଃଖ ଜାତ ହୁଏ । ମାତ୍ର ପରାଧୀନ ଭାରତବର୍ଷରେ ବିଦେଶୀ ଶକ୍ତିର ସମ୍ପୂର୍ଣ୍ଣ ପ୍ରଭୁତ୍ୱ ସ୍ୱୀକୃତ ହୋଇଥିଲାବେଳେ ସେହି ଭାରତେଶ୍ୱରୀଙ୍କ ଜୁବୁଲି ଉତ୍ସବ ଉପଲକ୍ଷେ ଦେଶସାରା ନାନା ଆଡ଼ମ୍ବରର ଆୟୋଜନ ହୋଇଥିଲା । ଏହାକୁ ଲକ୍ଷ୍ୟ କରି 'ନବସମ୍ବାଦ' ତୀବ୍ର କଟାକ୍ଷ କରିବା ସଙ୍ଗେ ସଙ୍ଗେ ଜୁବୁଲି ଉପଲକ୍ଷେ ଅଯଥା ଜନସାଧାରଣଙ୍କ ଅର୍ଥ ତାମସା ଓ ବ୍ୟସନରେ ଖର୍ଚ୍ଚ ନ କରି ଲୋକସାଧାରଣଙ୍କ ଉପକାର ପାଇଁ କୌଣସି ସ୍ଥାୟୀ ବ୍ୟବସ୍ଥା ଅଥବା ଅନୁଷ୍ଠାନ କରିବାକୁ ଦାବୀ

(୯) ନବସମ୍ବାଦ—୨ । ୬ । ୧୮୮୬

କରିଥିଲେ । କଟକରେ ଏହି ଜୁବୁଲି ଉପଲକ୍ଷେ ସ୍କୁଲ୍ କଲେଜରେ ଏକ ପାର୍କ ହେଉଥିବାରୁ ନବସମ୍ବାଦ ଲେଖିଥିଲେ—'ଏହି ଖ୍ରିଦା ଟଙ୍କାରେ କଟକରେ ଗୋଟିଏ ଟେକ୍ନିକାଲ ସ୍କୁଲ କରିବାକୁ ଶ୍ରୀବାବୁ ମହାନନ୍ଦ ଗୁପ୍ତ ପ୍ରସ୍ତାବ କରିଥିଲେ, କିନ୍ତୁ ଅନେକ ତର୍କ ବିତର୍କ ପରେ ତାହାଙ୍କର ପ୍ରସ୍ତାବ ଅଗ୍ରାହ୍ୟ କରାଗଲା । ଟେକ୍ନିକାଲ ସ୍କୁଲ ନ ହୋଇ ଷ୍ଟୁୟାର୍ଟ ସାହେବଙ୍କ ପ୍ରସ୍ତାବମତେ ସହରରେ ଗୋଟିଏ ସାଧାରଣଙ୍କ ସକାଶେ ଉଦ୍ୟାନ ହେବାର ଧାର୍ଯ୍ୟ ହେଲା । ଏପରି ଉଦ୍ୟାନରେ ଜନସାଧାରଣଙ୍କର ଯେ କି ବିଶେଷ ଉପକାର ହେବ ତାହା ଆମ୍ଭମାନଙ୍କର ସାମାନ୍ୟ ବୁଦ୍ଧିର ଅଗୋଚର । ଏଥିରେ ଓଡ଼ିଶା-ବାସୀଙ୍କର କୌଣସି ଉପକାର ହେବ ନାହିଁ । ଏ ଶ୍ୱେତାଙ୍ଗ-ମାନଙ୍କ ଲୀଳାଭୂମି ହେବ । କମିଟିରେ ଏ ପ୍ରସ୍ତାବ ଉତ୍ତମ ହୋଇ ନାହିଁ । ଟେକନିକାଲ ସ୍କୁଲ ହୋଇଥିଲେ ଦେଶର ଅନେକ ମଙ୍ଗଳ ସାଧନ ହୋଇଥାନ୍ତା । ଓଡ଼ିଶାର ବର୍ତ୍ତମାନ ଅବସ୍ଥା ଓ ଅଭାବ ବୁଝି କାର୍ଯ୍ୟ କରିବା ଉଚିତ' । (୧୦)

ସେକାଳର ଗୋରା ହାକିମମାନଙ୍କ ବିରୁଦ୍ଧରେ ପରାଧୀନ ଉତ୍କଳର ଏକ ସାପ୍ତାହିକ ପତ୍ରିକା ସମାଲୋଚନା କରି ଯେଉଁ ସ୍ୱଦେଶାନୁରାଗ ଓ ସାହସିକତାର ପରିଚୟ ଦେଇଅଛନ୍ତି, ଆଜିକାଲି ସରକାରୀ ଉଚ୍ଛୃଙ୍ଖଳ ଆଡ଼ମ୍ବର ବିରୁଦ୍ଧରେ ସେହି ସାହସ ଓ ବିଚକ୍ଷଣତା ସମ୍ଭବ କି ନା ବିଚାରିବାର କଥା ।

ଉପାଧିଲାଳସୀ ପଦସ୍ଥ ବ୍ୟକ୍ତିମାନେ କପରି ନିଜର ଭୁଲି ସରକାରୀ କଳର ତୋଷାମଦ କରନ୍ତି, ସ୍ୱାଧୀନ ଭାରତରେ ତାହାର ଦୃଷ୍ଟାନ୍ତ ବିରଳ ନୁହେ । ସରକାରୀ ସାହାଯ୍ୟ ଏବଂ ପୃଷ୍ଠପୋଷକତା

(୧୦) ନବସମ୍ବାଦ – ୩୦ । ୧ । ୧୮୮୭

ପାଇଁ ଆଜକାଲ ମଧ୍ୟ ପ୍ରତିଯୋଗିତା ଲାଗିଅଛି । ବ୍ୟକ୍ତିଗତ ସ୍ୱାର୍ଥପାଇଁ ଏ ଯୁଗର ବହୁପ୍ରତିଷ୍ଠିତ ଲୋକ ଯେକୌଣସି ହୀନକାର୍ଯ୍ୟ କରିବାକୁ ମଧ୍ୟ ପଶ୍ଚାତ୍ପଦ ନୁହନ୍ତି । ମାତ୍ର ସୁଦୃଢ଼ ଇଂରେଜ ଶାସନ କାଳରେ ଉପାଧିପ୍ରିୟ ବ୍ୟକ୍ତି ନିଶ୍ଚୟ ଥିଲେ । ମାତ୍ର ସେମାନେ କାପରୁ ବଜାଣିଆ ଏବଂ ଦେଶଦ୍ରୋହୀ ବୋଲି ସମାଲୋଚିତ ହୋଇଛନ୍ତି ତାଙ୍କର ମଧ୍ୟ ଉଦାହରଣର ଅଭାବ ନାହିଁ । ଏହିମାନଙ୍କୁ ବ୍ୟଙ୍ଗ କରି ନବସମ୍ବାଦ ଲେଖିଥିଲେ—'ଧନ୍ୟରେ ଉପାଧିଃ ତୁ କ ନ ଦେଖାଉ । ଭାରତ ସନ୍ତାନମାନେ ଅପମାନ ଭୁଲିଲେ । ସତ୍ୟାସତ୍ୟ ବିଚାର ଗୁଡିଲେ । ଅସମ୍ଭବକୁ ସମ୍ଭବ କଲେ, ମନର ନୀଚତା, ଏବଂ ଅସାରତା ପ୍ରକାଶ କଲେ । ଏଥିକୁ ବଳି ଆଉ କ ଦୁଃଖ ଆଉ ଆଶ୍ଚର୍ଯ୍ୟ କଥା ଅଛି । × × ଏହି ଯୋଗୁସିନା ଆମ୍ଭମାନଙ୍କୁ ଶ୍ୱେତାଙ୍ଗମାନେ 'କାଲା ଆଦମି' ବୋଲି ଘୃଣା କରୁଅଛନ୍ତି ଏବଂ ଆମ୍ଭମାନଙ୍କ କଥାର ଅସାରତା ପ୍ରମାଣ କରୁଅଛନ୍ତି । × × × ଦେଶର ଏ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ଶିକ୍ଷିତ ଏବଂ ସଭ୍ୟ ବ୍ୟକ୍ତିମାନେ ଏପରି ଅକାର୍ଯ୍ୟକର କଥାରେ ଲିପ୍ତ ହୋଇଅଛନ୍ତି ଦେଖି ଅତ୍ୟନ୍ତ ଦୁଃଖ ହେଉଅଛି । (୧୧)

କେବଳ ସେତିକି ନୁହେଁ, ଶିକ୍ଷିତ ବ୍ୟକ୍ତିମାନେ ନାନା ପ୍ରକାର ଅନୈତିକ କାର୍ଯ୍ୟରେ ଲିପ୍ତ ରହୁଥିଲେ । ମଦ୍ୟପାନ ସେମାନଙ୍କର ଶିକ୍ଷାଭିମାନର ଏହି ପ୍ରକାର ଅଳଙ୍କାର ଥିଲା କହିଲେ ଚଳେ । ଝୁଲଣ ଉତ୍ସବ ଉପଲକ୍ଷେ କତିପୟ ସମ୍ଭ୍ରାନ୍ତ ବ୍ୟକ୍ତି । କୁତ୍ସିତ ବେଶ୍ୟାନାଚର ଆୟୋଜନ କରିଥିବାରୁ ନବସମ୍ବାଦ କଟୁ ସମାଲୋଚନା କରିଥିବା ଜଣାଯାଏ । (୧୨)

---

(୧୧) ନବସମ୍ବାଦ— ୭ । ୨ । ୧୮୮୭
(୧୨) ନବସମ୍ବାଦ —୨୦ । ୨ । ୧୮୮୭

ମୁଷ୍ଟିମେୟ ଶିକ୍ଷିତ ବ୍ୟକ୍ତିମାନଙ୍କ ବ୍ୟବହାରରେ ସାମାଜିକ ଜୀବନ କଳୁଷିତ ହୋଇ ପଡ଼ୁଥିଲା । ସଂସ୍କାର ଓ ସଭ୍ୟତା ନାମରେ ସେମାନେ ନାନା ଉଚ୍ଛୃଙ୍ଖଳ କାର୍ଯ୍ୟରେ ଲିପ୍ତ ରହୁଥିଲେ । ସାମାଜିକ ଜୀବନର ଏ ନୈତିକ ଓ ଅଧଃପତନରେ ଜାତୀୟବାଦୀଗଣ କ୍ଷୁବ୍ଧ ହୋଇଥିବା ତତ୍କାଳୀନ ଆଲୋଚନାରୁ ପ୍ରମାଣିତ ହୁଏ ।

ସେହି ସମୟର ଦୋଳଯାତ୍ରା ଉତ୍ସବ ଉପଲକ୍ଷେ କିପରି ଅନୀତିକର କାର୍ଯ୍ୟମାନ ଆୟୋଜିତ ହୋଇଥିଲା, ତାହା ଆଲୋଚିତ ହୋଇଛି—ଦୋଳଯାତ୍ରା ଭାରତବର୍ଷରେ ଗୋଟିଏ ପ୍ରଧାନ ପର୍ବ । ଆବାଳବୃଦ୍ଧବନିତା ଏ ପର୍ବରେ ଆନନ୍ଦୋନ୍ମତ୍ତ । ସମସ୍ତଙ୍କ ମୁଖ ହାସ୍ୟପୂର୍ଣ୍ଣ; କିନ୍ତୁ ଏ ଆନନ୍ଦରେ ସୁଖ ନାହିଁ । ଭାର ହୋ ନିଷ୍ପାପ ନୁହଇ । ଆଜିକାଲି ପ୍ରତ୍ୟେକ ଶୁଭ-ଦିନରେ ପ୍ରତ୍ୟେକ ଉତ୍ସବରେ ଇନ୍ଦ୍ରିୟ-ବିଳାସ ପ୍ରିୟତା ଅଧିକ ପରିମାଣରେ ଲକ୍ଷିତ ହୁଏ । କୃତବିଦ୍ୟ ଲବ୍ଧପ୍ରତିଷ୍ଠ ବିଜ୍ଞ ବ୍ୟକ୍ତିମାନେ ମଧ୍ୟ ଏ ବିଳାସପ୍ରିୟତା ପାପରୁ ମୁକ୍ତ ନୁହନ୍ତି । କହିବାକୁ ଗଲେ ସେମାନଙ୍କ ଦଳରେ ଏ ବେଗଟା ସଂକ୍ରାମକ । ଶୁଭଦିନମାନଙ୍କରେ ପ୍ରାପ୍ତ ମଜଲିସ ହୁଅଇ ଏବଂ ଏହି ସବୁ ମଜଲିସ୍‌ରେ ପାପର ଖୋରଣ ଅବତାର ବାରାଙ୍ଗନା ମୂର୍ତ୍ତି ବିରାଜମାନ । ବାରାଙ୍ଗନାର କୁଟିଳ ଭ୍ରୂଭଙ୍ଗି ବିଷପୂର୍ଣ୍ଣ ମୃଦୁହାସ ଏବଂ ଘୂର୍ଣ୍ଣିତ ଅଙ୍ଗଭଙ୍ଗି ପୃଥିବୀରେ କି ଅମଙ୍ଗଳ ନ କରେ । ଅସଂଖ୍ୟ ଲୋକ ଏହି ରାକ୍ଷସୀର କବଳରେ ପଡ଼ି ଅପାର କ୍ଳେଶ ଲଭି ଅଛନ୍ତି ଏବଂ ମଧ ଲଭୁ ଅଛନ୍ତି । ତଥାପି ଲୋକେ ଏ କରାଳରୂପିଣୀ-ଚରଣରେ ସର୍ବସ୍ୱ ଆପଣାକୁ ବଳି ଦେବାରେ ବିରତ ହେଉ ନାହାନ୍ତି । (୧୩)

---

(୧୩) ନବସମ୍ବାଦ – ୧୯ । ୩ । ୧୮୮୨

ଏ ତ ଗଳ୍ପ ସେ କାଳର ସମାଜର ଏକ କରୁଣ ଚିତ୍ର । ସେତେବେଳେ ଦେଶର ଅର୍ଥନୈତିକ ଅବସ୍ଥା ଆହୁରି ଅନୁନ୍ନତ ଅବସ୍ଥାରେ ଥିଲା । ଇଂରେଜ ଶାସନର ଏ ଦେଶକୁ ଏକ ପ୍ରଧାନ ଦାନ ହେଉଛି ରେଲ ଲାଇନ ଜରିଆରେ ସମଗ୍ର ଦେଶକୁ ସଂଯୁକ୍ତ କରିବା । ଏହା ଫଳରେ କେବଳ ଦେଶର ଐକ୍ୟ ଏବଂ ଏକ ମହାଭାରତୀୟ ଜାତୀୟତା ସମ୍ଭବ ହେବା ସଙ୍ଗେ ସଙ୍ଗେ ପ୍ରାନ୍ତୀୟ ତଥା ଆନ୍ତର୍ଦେଶୀୟ ଖବର ଆଦାନ ପ୍ରଦାନ ଅଧିକ ସହଜ ଓ ସୁଗମ ହୋଇଅଛି । ମାତ୍ର ଏଠାରେ ଯେଉଁ ସମୟର କଥା ଆଲୋଚନା କରି ଯାଉଅଛି ସେତେବେଳେ ଓଡ଼ିଶାରେ ରେଲଲାଇନ ପଡ଼ି ନ ଥିଲା ଏବଂ ଅନ୍ୟାନ୍ୟ ପ୍ରାନ୍ତ ସହିତ ସଂପର୍କ ରକ୍ଷା କରିବା ଅତ୍ୟନ୍ତ ସହଜ ବ୍ୟାପାର ନ ଥିଲା । ରାଜଧାନୀ କଲିକତା ସହିତ ଓଡ଼ିଶାବାସୀ ଷ୍ଟିମର ସାହାଯ୍ୟରେ ସମୁଦ୍ର ପଥରେ ସଂପର୍କ ରକ୍ଷା କରୁଥିଲେ । ଆଜିକାଲି ପରି ସେତେବେଳେ ସମୁଦ୍ରପଥ ଏତେ ନିରାପଦ ନ ଥିଲା ଏବଂ ଉନ୍ନତ ଧରଣର ବାଷ୍ପୀୟ ପୋତ ଉଦ୍ଭାବିତ ହୋଇ ନ ଥିଲା । ତେଣୁ ସମୁଦ୍ର ପଥରେ ବାରମ୍ବାର ଏହି ପୋତଗୁଡ଼ିକ ଝଡ଼ବତାସ ଏବଂ ନାନା ପ୍ରାକୃତିକ ବାଧା ବିପଦର ସମ୍ମୁଖୀନ ହୋଇ ଧ୍ୱଂସମୁଖରେ ପଡ଼ୁଥିଲେ ଏବଂ ଅସଂଖ୍ୟ ଜଳଯାତ୍ରୀ ମୃତ୍ୟୁବରଣ କରୁଥିଲେ । ଉତ୍କଳପ୍ରାନ୍ତରେ ରେଲଲାଇନ ନିର୍ମିତ ନ ହେଲେ ତାହାର ଉନ୍ନତି ହୋଇ ପାରିବ ନାହିଁ ବୋଲି ଉତ୍କଳ ସଭାର ଗୋଟିଏ ଅଧିବେଶନ ପ୍ରସ୍ତାବ ଗ୍ରହଣ କରି ପୁରୀ ବେନାରସ ରେଲପଥ ନିର୍ମାଣ ପାଇଁ ସରକାର ତୁରନ୍ତ ଧ୍ୟାନ ଦିଅନ୍ତୁ ବୋଲି ଦାବୀ କରି ଯାଇଥିଲା । (୨୦) ସେହି ସଂଖ୍ୟାରେ ଅନ୍ୟ ଏକ ସମ୍ବାଦରେ ପ୍ରକାଶ ପାଉଛି ଯେ ସମୁଦ୍ରରେ ପ୍ରବଳ ଝଡ଼

---

(୨୦) ନବସମ୍ବାଦ—୨ । ୬ । ୧୮୮୭

ଝଡ଼ତୋଫାନ ଫଳରେ 'ସର୍ଜନ ଲରେନ୍ସ' ନାମକ ଜାହାଜ ବୁଡ଼ିଯାଇ ୭୫୦ ଜଣ ଯାତ୍ରୀ ମୃତ୍ୟୁ ବରଣ କରିଥିଲେ । ଦେଶରେ ରାସ୍ତାଘାଟ ନିରାପଦ ନ ଥିଲା । ପୁରୁଷୋତ୍ତମ କ୍ଷେତ୍ର ଉଦ୍ଦେଶ୍ୟରେ ଭାରତର ବିଭିନ୍ନ ପ୍ରାନ୍ତର ଅସଂଖ୍ୟ ଯାତ୍ରୀ ଓଡ଼ିଶାକୁ ତୀର୍ଥଯାତ୍ରା ଉଦ୍ଦେଶ୍ୟରେ ଚାଲି ଚାଲି ଆସୁଥିଲେ । ସେମାନଙ୍କପାଇଁ ଏକମାତ୍ର ପଥ ଥିଲା ଜଗନ୍ନାଥ ସଡ଼କ । ବହୁତଦିନ ରାସ୍ତାକଡ଼ରେ ଅସ୍ୱାସ୍ଥ୍ୟକର ପରିସ୍ଥିତିରେ ଦିନଯାପନ କରି ଯାତ୍ରୀମାନେ ନାନା ରୋଗରେ ଆକ୍ରାନ୍ତ ହୋଇ ମୃତ୍ୟୁବରଣ କରୁଥିଲେ । ସେମାନଙ୍କ ମଧ୍ୟରେ ବେଳେ ବେଳେ ହଇଜା ବ୍ୟାପୁଥିଲେହେଁ ଉପଯୁକ୍ତ ଚିକିତ୍ସାର କୌଣସି ବ୍ୟବସ୍ଥା ନ ଥିଲା । ତେଣୁ ଏହି ଯାତ୍ରୀମାନେ ରାସ୍ତାକଡ଼ରେ ମରିବା ସଙ୍ଗେ ସଙ୍ଗେ ସେମାନଙ୍କ ସଂକ୍ରମଣଜନିତ ବ୍ୟାଧି ନିକଟବର୍ତ୍ତୀ ଜନବସତିରେ ବ୍ୟାପ୍ତ ହୋଇ ବହୁପ୍ରାଣୀକୁ ମହାପଥର ଯାତ୍ରୀ କରାଉଥିଲା । ରାସ୍ତାକଡ଼ରେ ବହୁଦିନ ପର୍ଯ୍ୟନ୍ତ ଶବ ପଡ଼ି ରହୁଥିଲେହେଁ ତାହାକୁ ଉଠାଇ ନେବାପାଇଁ କୌଣସି ସରକାରୀ ବ୍ୟବସ୍ଥା ହେଉ ନଥିଲା । ଏଥିପାଇଁ ତୁରନ୍ତ ବ୍ୟବସ୍ଥା କରିବାକୁ ସରକାରଙ୍କ ଦୃଷ୍ଟି ଆକର୍ଷଣ କରାଯାଇଛି । (୧୫)

'ନବସମ୍ବାଦ' ଏକ ସାପ୍ତାହିକ ପତ୍ରିକା ହେଲେହେଁ ଏଥିରେ ଧାରାବାହିକ ଭାବରେ ଓଡ଼ିଆ ସାହିତ୍ୟର ଚର୍ଚ୍ଚା ହେଉଥିଲା ଏବଂ ପ୍ରକାଶିତ ପୁସ୍ତକାବଳୀର ସମାଲୋଚନା ପ୍ରକାଶ ପାଉଥିଲା । ଏକାଧିକ ସଂଖ୍ୟାରେ 'ତାଳଚେର ଏବଂ ବାମଣ୍ଡା' ଶୀର୍ଷକ ଭ୍ରମଣକାହାଣୀ ପ୍ରକାଶିତ ହୋଇଥିଲା । ସାମୟିକ ରାଜନୀତି, ସଂସ୍କୃତି ଏବଂ ନୀତିବିଷୟକ ପ୍ରବନ୍ଧ ଓ ଆଲୋଚନା ମଧ୍ୟ ପତ୍ରିକାର କଳେବର ମଣ୍ଡନ କରୁଥିଲା । ବେଳେ ବେଳେ ନାନା ଦେଶପ୍ରେମ

(୧୫) ନବସମ୍ବାଦ—୧୪ । ୭ । ୧୮୮୭

ବ୍ୟଞ୍ଜକ କବିତା ମଧ୍ୟ ପତ୍ରିକାରେ ସ୍ଥାନ ପାଉଥିଲା । ନବସମ୍ବାଦ' ମାତ୍ର ଏକବର୍ଷର ଜୀବନକାଳ ମଧ୍ୟରେ ଯେଉଁ କେତେକ ଓଡ଼ିଆ ପୁସ୍ତକର ପରିଚୟ ଦେଇଅଛନ୍ତି, ସେମାନଙ୍କ ମଧ୍ୟରେ ସଦାଶିବ ପ୍ରହରାଜଙ୍କ ଜାତ୍ୟନ୍ତ୍ର କଳିକା, ରାମ-କୃଷ୍ଣ ସାହୁଙ୍କ ସରଳ ଶରୀରଶିକ୍ଷା ଲଳିତ ମୋହନ ଚକ୍ରବର୍ତ୍ତୀଙ୍କ ଜନ୍ମଭୂମି, ବୈକୁଣ୍ଠ ମହାପାତ୍ରଙ୍କ 'ଖେଳ କଣ୍ଟକ' ଏବଂ ଏମାନଙ୍କ ଛଡ଼ା ଚଣ୍ଡୀ, ସଂସାର ଭଗବତ କୋଟି ବ୍ରହ୍ମାଣ୍ଡସୁନ୍ଦରୀ, ପାରିବାରିକ-ଧାତ୍ରୀ ଶିକ୍ଷା, ଅଳଙ୍କାରଚନ୍ଦ୍ରିକା ଭବନାରସତରଙ୍ଗ, ବୀରଚରିତ, ପରାଶରସଂହିତା, ଝାଡ଼ାକଇ ରୋଗର ଦେଶୀ ଓ ଡାକ୍ତରି ଚିକିତ୍ସା ପ୍ରଭୃତି ପ୍ରଧାନ । ପ୍ରସିଦ୍ଧ 'ବାବାଜୀ' ନାଟକପ୍ରଣେତା ଜଗନ୍ମୋହନ ଲାଲଙ୍କ ସପ୍ତ ନାଟକର ବିସ୍ତୃତ ଆଲୋଚନା ଏବଂ ଉପେନ୍ଦ୍ର ଭଞ୍ଜ ଦୀନକୃଷ୍ଣ ଏବଂ ରାଧାନାଥଙ୍କ ରଚନା ସଂପର୍କରେ ବିଶ୍ଳେଷଣାତ୍ମକ ଆଲୋଚନା ମଧ୍ୟ ଦେଖିବାକୁ ମିଳେ ।

ଅର୍ଥାଭାବରୁ 'ନବସମ୍ବାଦ' ସ୍ୱତନ୍ତ୍ର ଭାବରେ ବଞ୍ଚି ରହିବା ସମ୍ଭବ ନ ହେବାରୁ ସେତେବେଳେ ବାଲେଶ୍ୱରରୁ ପ୍ରକାଶ ପାଉଥିବା "ଉତ୍କଳ ଦର୍ପଣ" ସାପ୍ତାହିକ ସହିତ ସାମିଲ ହୋଇ 'ଉଡ଼ିଆ ନବସମ୍ବାଦ' ନାମରେ ପ୍ରକାଶ ପାଇବ ବୋଲି 'ନବସମ୍ବାଦର ଅନ୍ତିମ ବାର୍ତ୍ତାରେ ଘୋଷଣା କରାଯାଇଥିଲା । ( ୧୬ ) ତେବେ ଏହି ସ୍ୱଳ୍ପକାଳର ପ୍ରକାଶନୀ ମଧ୍ୟରେ ନବସମ୍ବାଦ ସେ କାଳର ରାଜନୀତି, ସମାଜ ଏବଂ ଅର୍ଥନୈତିକ ଜୀବନର ଯେଉଁ ପରିଚୟ ପ୍ରଦାନ କରେ, ଆଧୁନିକ ଯୁଗର ଇତିହାସ-ଆଲୋଚକମାନଙ୍କୁ ତାହା ଯେ ଯଥେଷ୍ଟ ଆଲୋକପାତ କରିବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

---

(୧୬) ନବସମ୍ବାଦ — ୨୯ ।୧୨। ୧୮୬୭

# ଓଡ଼ିଆ ଏକାଙ୍କିକା

## ଏକାଙ୍କିକା କାହିଁକି ?

ଆଧୁନିକ ସାହିତ୍ୟରେ କ୍ଷୁଦ୍ରଗଳ୍ପ, ଖଣ୍ଡକବିତା ପରି ଏକାଙ୍କିକାର ସୃଷ୍ଟି ମଧ୍ୟ ବହୁପରେ ସମ୍ଭବ ହୋଇଥିଲା । ଏହାର କାରଣ ଏକାଙ୍କିକାର ସୃଷ୍ଟି ପାଇଁ ଯେଉଁ ପ୍ରକାର ଅନୁକୂଳ ପରିବେଶ ଆବଶ୍ୟକ, ତାହା ଏ ଦେଶରେ ନଥିଲା । ବର୍ତ୍ତମାନ ସମସ୍ୟା ବହୁଳ ଜଗତ ଯେପରି ଅଗ୍ରସର ହେଉଛି, ସେଥିରେ ମନୁଷ୍ୟର ସମୟର ମୂଲ୍ୟବୋଧ ସେହି ପରିମାଣରେ ବଢ଼ିଚାଲିଛି, ତେଣୁ ଆଧୁନିକ ମନୁଷ୍ୟ ମହାକାବ୍ୟ, ମହାପୁରାଣ, ବଡ଼ ବଡ଼ ଉପନ୍ୟାସ ପଢ଼ିବାକୁ ସମୟ ସୁବିଧା କରିପାରେ ନାହିଁ । ଶିଳ୍ପପ୍ରଧାନ ବିଜ୍ଞାନ ପ୍ରଭାବିତ ସଂସାର ସର୍ବଦା ଏପରି ଭାବରେ କର୍ମ-ଚଞ୍ଚଳ ଯେ ପ୍ରାଚୀନ ସମାଜର ମନୁଷ୍ୟପରି ଅବସର ଜୀବନ ତା ନିକଟରେ ଦୁର୍ଲଭ ବହୁଲେ ଚଳେ । ଜୀବନ ସଂଗ୍ରାମ ଯେଉଁ ଭାବରେ ଜଟିଳ ହୋଇ ପଡ଼ୁଛି, ସେହି ପରିମାଣରେ କର୍ମମୁଖର ମନୁଷ୍ୟ ବିବ୍ରତ ହୋଇ ପଡ଼ୁଛି । ଫଳରେ ଏ ଯୁଗର ସ୍ରଷ୍ଟା କ୍ଷୁଦ୍ରଗଳ୍ପ, ଖଣ୍ଡକବିତା ଓ କ୍ଷୁଦ୍ର ଉପନ୍ୟାସ ସୃଷ୍ଟି କରି ଆଧୁନିକ ସମାଜର ମାନସିକ ଖାଦ୍ୟ ଯୋଗାଇ ଆସିଛି । ଏହିଭଳି ଭାବରେ ବର୍ତ୍ତମାନ କର୍ମରତ ପାଠକ ସମାଜ ଆଗରେ ନାଟକ ପରିବର୍ତ୍ତେ ଏକାଙ୍କିକା ଅଧିକ ଆଗ୍ରହ ସୃଷ୍ଟି କରିଅଛି ।

## ଇଂରାଜୀ ସାହିତ୍ୟରେ ଏକାଙ୍କିକା

ଇଂରାଜୀ ସାହିତ୍ୟର ଇତିହାସ ଆଲୋଚନା କଲେ ଜଣାଯାଏ ଯେ ସେ ଦେଶରେ ଏକାଙ୍କିକା ଏକ ଆଧୁନିକତମ ସୃଷ୍ଟି ହେଲେହେଁ ମଧ୍ୟଯୁଗ ଇଂଲଣ୍ଡର ଏକାଙ୍କିକାର ଅଭିନୟ ପ୍ରଚଳନ ଥିବା ଜଣାଯାଏ । ବିଶେଷତଃ ଅଷ୍ଟାଦଶ ଶତାବ୍ଦୀର କଞ୍ଚିତ ପୂର୍ବରୁ ମିତବାଦୀମାନେ ଆଇନ କରି ଅଭିନୟ ପ୍ରଦର୍ଶନ ଦୋଷାବହ ବୋଲି ଅଭିଯାନ ଚଳାଇଥିଲେ ଏବଂ ତାହାର ଫଳରେ ଇଂଲଣ୍ଡର ନାଟକ ସାହିତ୍ୟ ଘୋର ଦୁର୍ଦ୍ଦିନର ସମ୍ମୁଖୀନ ହୋଇଥିଲା, ଠେଣ୍ଟୁ ଠିକ୍ ଏହି ସମୟରେ ବହୁ ଏକାଙ୍କିକା ଲିଖିତ ହୋଇ ଅଭିନୀତ ଓ ଲୋକପ୍ରିୟ ହୋଇ ଥିବାର ପ୍ରମାଣ ମିଳେ । ଯାହା-ହେଉ, ଆଧୁନିକ ରୁଚି ବଦଳିବା ସଙ୍ଗେ ସଙ୍ଗେ ଶିଳ୍ପ ଯୁଗର ସମାଜରେ ବେତାର ପ୍ରତିଷ୍ଠାନର ପ୍ରସାର ଏକାଙ୍କିକାର ପ୍ରଚାର ଓ ପ୍ରସାର ଦିଗରେ ଅଧିକ କ୍ଷେତ୍ର ପ୍ରସ୍ତୁତ କରିଥିଲା ।

## ସଂସ୍କୃତ ସାହିତ୍ୟରେ ଏକାଙ୍କ ରଚନା

ବିଂଶ ଶତାବ୍ଦୀରେ ଏକାଙ୍କିକାର ପ୍ରଚଳନ ଅଧିକ ହେଲେହେଁ ସଂସ୍କୃତ ଓ ଇଂରେଜୀ ସାହିତ୍ୟରେ ରଚନା ବହୁକାଳରୁ ଥିଲା । ସଂସ୍କୃତରେ ନାଟକକୁ ସାଧାରଣତଃ ଦୁଇଭାଗରେ ବିଭକ୍ତ କରାଯାଏ । [୧] ରୂପକ ଓ [୨] ଉପରୂପକ । ରୂପକ ବିଭାଗଟି ୧୦ ଭାଗରେ ଏବଂ ଉପରୂପକ ବିଭାଗଟି ୧୮ ଭାଗରେ ବିଭକ୍ତ ହୋଇ ଥିବା ଜଣାଯାଏ । ଏହି ରୂପକ ଶ୍ରେଣୀର ରଚନାର ଅନ୍ତର୍ଗତ "ଭାଣ" ଏବଂ "ବୀଥି" ଏକାଙ୍କ ବିଶିଷ୍ଟ ରଚନା । "ଭାଣ" ଶ୍ରେଣୀର ରଚନାର କଥାବସ୍ତୁ ଜଣକ ମୁଖରୁ ପ୍ରକାଶିତ ହୋଇଥାଏ ।

ପ୍ରେମ, ଯୁଦ୍ଧ, କଳହ ଓ ପ୍ରତାରଣା, ପ୍ରବଞ୍ଚନା ପ୍ରଭୃତି ଏଥିରେ କଥାବସ୍ତୁ ଭାବରେ ଗୃହୀତ ହୋଇଥାଏ । ସେହିପରି "ବୀଥି" ଶ୍ରେଣୀର ରଚନାରେ ପ୍ରେମ ଓ ହାସ୍ୟ ରସାତ୍ମକ ଭାବନା ଅଧିକ ପ୍ରାଧାନ୍ୟ ଲାଭ କରେ । ଏତଦ୍ ବ୍ୟତୀତ "ଉପରୂପକ" ଅନ୍ତର୍ଗତ "ଉଲ୍ଲାପ୍ୟ", 'କାବ୍ୟ' "ପ୍ରେଖ୍ୟାନ" 'ରାସକ', ଶ୍ରୀଗଦିତ' 'ବିଳାସିକା', 'ଭାଣିକା' ପ୍ରଭୃତି ଏକ ଅଙ୍କ ବିଶିଷ୍ଟ ରଚନା । ଏ ଗୁଡ଼ିକ ଭିନ୍ନ ଭିନ୍ନ ବିଷୟବସ୍ତୁର ପରିବେଶ ଦୃଷ୍ଟିରୁ ନିଜ ନିଜର ବୈଶିଷ୍ଟ୍ୟ ପ୍ରଦର୍ଶନ କରିଥାଆନ୍ତି । ଅବଶ୍ୟ ଆଧୁନିକ ଏକାଙ୍କିକା ଓ ସେ କାଳର ଏକାଙ୍କ ରଚନାକୁ ସମାନ ଧର୍ମାକ୍ରାନ୍ତ ବୋଲି କୁହାଯାଇ ପାରିବ ନାହିଁ । କେବଳ ଇତିହାସ ଦୃଷ୍ଟିରୁ ଏଠାରେ ସେ ଗୁଡ଼ିକର ପ୍ରାସଙ୍ଗିକ ଅବତାରଣା ।

## ଆଧୁନିକ ଏକାଙ୍କିକାର ଶିଳ୍ପରୀତି

ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପ ପରି ନାଟକ ଓ ଏକାଙ୍କିକାର ସଂପର୍କ ଆଲୋଚନା କରାଯାଇପାରେ । ଏକାଙ୍କିକା, ନାଟକର ଏକ କ୍ଷୁଦ୍ର ସଂସ୍କରଣ ନୁହେଁ; ଏହା ଏକ ସ୍ୱତନ୍ତ୍ର ସୃଷ୍ଟି । ଅଳ୍ପ ପରିସର ଏବଂ ସମୟ ମଧ୍ୟରେ ଜୀବନର ଏକ ନିବିଡ ଅନୁଭୂତିକୁ ରୂପାୟନ କରି ନାଟ୍ୟାସ୍ୱତ୍ତ୍ୱ ପ୍ରତିପାଦନ କରିବା ଏକାଙ୍କିକାର ପ୍ରଧାନ ଧର୍ମ । ଉପନ୍ୟାସ ଓ ନାଟକରେ ଆମେ ଜୀବନର ବିଭିନ୍ନ ଅବସ୍ଥାର ଚିତ୍ର ଦେଖିବାକୁ ପାଉ । ଏକାଙ୍କିକାରେ ସେପରି ଆଶା କରାଯାଏ ନାହିଁ । ଏହା ଏକ ମୂର୍ତ୍ତିବହୁଳ ମୁହୂର୍ତ୍ତର ଜୀବନ୍ତ ରୂପରେଖା, ଜଣେ ବିଶିଷ୍ଟ ଆଲୋଚକଙ୍କ ମତରେ ଗୋଟିଏ ଗୋଟିଏ ବିଶେଷ ମୁହୂର୍ତ୍ତର ଗଭୀର ଭାବୋଦ୍ଦୀପକ ଘଟଣା ସମୂହକୁ ବିଦ୍ୟୁତ ଗତିରେ ଘଟାଇ ନାଟକର ଚରମ ପରିଣତି ଦେଖାଇବା ଏକାଙ୍କିକା ନାଟକର

ମୁଖ୍ୟ ଲକ୍ଷ୍ୟ । ଏକାଙ୍କିକା ସ୍ୱଳ୍ପ ପରିଧି ବିଶିଷ୍ଟ, ଗୋଟିଏ ଘଟଣା ସଂସ୍ଥାନ ମଧ୍ୟରେ ପରିଲକ୍ଷିତ ହୁଏ ଏବଂ ଏହି କ୍ଷୁଦ୍ର ପରିବେଶ ମଧ୍ୟରେ ଏହାର ଚରମ ପରିଣତି ଦେଖାଯାଏ । ଏକାଙ୍କିକାରେ ବହୁ ଘଟଣା ବା ଚରିତ୍ରର ସଂଯୋଜନା କରି ବିଷୟବସ୍ତୁର ସଂପ୍ରସାରଣ କରିବାପାଇଁ ଏଥିରେ ସୁଯୋଗ ନଥାଏ । ଗୋଟିଏ ପ୍ରଧାନ ଚରିତ୍ର ବା ଘଟଣାକୁ ଅବଲମ୍ବନ କରି ସମଗ୍ର ଏକାଙ୍କିକାର ପୀଠଭୂମି ଗଢ଼ି ଉଠେ । ଅବାନ୍ତର ବିଷୟର ଅବତାରଣା ପାଇଁ ଏଥିରେ ଅବକାଶ ନାହିଁ । ଚରିତ୍ର ଚିତ୍ରଣ ଏଥିରେ ଖୁବ୍ ଶୀଘ୍ର ଓ ସ୍ପଷ୍ଟ ହେବା ଉଚିତ । ତେଣୁ ସମଗ୍ର କଥାବସ୍ତୁରେ ଗୋଟିଏ ବିଷୟରେ ପ୍ରଭାବ ଅନୁଭୂତ ହୁଏ । ଏହା ଦ୍ୱାରା ଐକତ୍ୱ ମଧ୍ୟ ପ୍ରତିପାଦିତ ହୁଏ । ଏକାଙ୍କିକାର କଥାବସ୍ତୁ ସଂପର୍କରେ ଆଲୋଚନା କରିବା ଅନାବଶ୍ୟକ । କାରଣ ନାଟକ ପରି ଏହା ବିଭିନ୍ନ ଶ୍ରେଣୀର ହୋଇ ପାରିଲେ ହେଁ ଏକ ସମ୍ପୂର୍ଣ୍ଣ ଜୀବନର ଚିତ୍ର ଏଥିରେ ଅସମ୍ଭବ । କୌଣସି ସୂକ୍ଷ୍ମ ପ୍ରସଙ୍ଗର ଅବତାରଣାହିଁ ଏହାର ଉପଜୀବ୍ୟ ବସ୍ତୁ । ଚରିତ୍ରର ବିକାଶ ସର୍ବଦା ଯୁକ୍ତି ସଙ୍ଗତ ହେବ ଏବଂ ସଂଳାପ ଯୋଜନା ମାଧ୍ୟମରେ ବିଷୟ ବସ୍ତୁ ଏଭଳି ସହାନୁଭୂତିର ସହିତ ପରିବେଷିତ ହେବ ଯହିଁରେ ଏକାଙ୍କିକାର ସଂଫଳତା ଉପଲବ୍ଧି କରିଯାଇ ପାରିବ । ମୋଟ ଉପରେ ଏକାଙ୍କିକାର ସଂଳାପ ଯୋଜନା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କାରଣ ଉପଯୁକ୍ତ ସଂଳାପ ଦ୍ୱାରା ଘଟଣା ଓ ଚରିତ୍ରର ପୂର୍ଣ୍ଣ ପ୍ରକାଶ ସମ୍ଭବ ହୁଏ । ଏକାଙ୍କିକାରେ ଏକ ବିଶେଷ ପରିବେଶ ସୃଷ୍ଟି ହୋଇଥାଏ । ନାଟକରେ କ୍ରମିକ ଅଗ୍ରଗତି ହୁଏ ଚରମ ପରିଣତି (Climax) ଆଡ଼କୁ । ମାତ୍ର ଏକାଙ୍କିକାରେ ଚରମ ପରିଣତିର ଅବ୍ୟବହିତ ପୂର୍ବରୁ କଥାବସ୍ତୁ ଆରମ୍ଭ ହୋଇ ତୁରନ୍ତ (Clmax) ଆଡ଼କୁ କଥାବସ୍ତୁ ଗତିଶୀଳ ହୁଏ ।

## ଓଡ଼ିଆ ଏକାଙ୍କିକାର ଇତିହାସ

ଓଡ଼ିଆ ଭାଷାରେ ଏକାଙ୍କିକା ବେଶୀଦିନର ନୁହେଁ । କେତେବର୍ଷ ତଳେ ସବୁଜ ଯୁଗର ଲେଖକଗଣ ସାହିତ୍ୟର ବିଭିନ୍ନ ବିଭାଗରେ ଯେପରି ନୂତନ ବାର୍ତ୍ତା ପ୍ରଚାର ପାଇଁ ଉଦ୍ୟମ ଚଳାଇ ଥିଲେ, ସେହିପରି ଏକାଙ୍କିକା ଭଳି କେତେକ ନୂତନ ବିଭାଗରେ ମଧ୍ୟ ପରୀକ୍ଷା କରିଥିଲେ । ଏହି ସମୟରେ 'କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ ସୌମ୍ୟା' ଏକାଙ୍କିକା ସାମୟିକ ପତ୍ରିକାରେ ପ୍ରକାଶିତ ହୋଇଥିଲା । ଏହାର ପ୍ରକାଶକାଳ ବୋଧହୁଏ ୧୯୩୨।୩୩ ମସିହା ହେବ ।

"ଦେହକୁ ସିନା ବନ୍ଦୀ କରି ରଖାଯାଇପାରେ । ମନକୁ ନୁହେଁ" – ଏହି ଭାବନାଟି ପ୍ରତିପାଦିତ ହୋଇଛି ସୌମ୍ୟା ଏକା-ଙ୍କିକାରେ । ତେଣୁ ରାଣୀ ସୌମ୍ୟା ରାଜରାଣୀ ହୋଇ ରାଜନଗରର ସମସ୍ତ ସୁଖ ଓ ବିଳାସ ମଧ୍ୟରେ ବନ୍ଦିତା ହେଲେ ମଧ୍ୟ ମନ ତାଙ୍କର ହାହାକାର କରି ଉଠିଥିଲା । ରାଜା ଦେହର କାମନା କରିଥିଲେ, ମାତ୍ର ମନକୁ କେବେହେଲେ ଲୋଡ଼ି ନଥିଲେ । ତେଣୁ ସୌମ୍ୟାଙ୍କ ପିଲାଦିନର ସାଥୀ ଭିକ୍ଷୁକ ବେଶରେ ରାଜନବର ଦ୍ୱାରରେ ଉପସ୍ଥିତ ହୁଅନ୍ତେ ସୌମ୍ୟା ତାଙ୍କ ପ୍ରତି ମନପ୍ରାଣ ଅର୍ପଣ କରି ଦେଇଥିଲେ । ଅନ୍ୟାୟ ଆଚରଣ ଅଭିଯୋଗରେ ଭିକ୍ଷୁକଙ୍କ ପ୍ରତି ଫାସି ଆଦେଶ ହୁଏ । ମାତ୍ର ରାଣୀ ଏଥିରେ ହସ୍ତକ୍ଷେପ କରି ନିଜେ ଦୋଷୀ ବୋଲି ଘୋଷଣା କରନ୍ତି ଏବଂ ରାଣୀଙ୍କର ଏହି ସ୍ୱୀକାରୋକ୍ତିରେ ରାଜାଙ୍କର ମୂର୍ଚ୍ଛା ହୁଏ । ଏହାହିଁ ହେଉଛି ସୌମ୍ୟା ଏକାଙ୍କିକାର କଥାବସ୍ତୁ । ଏ ଯୁଗର ତୃତୀୟ ଦଶକରେ ରଚିତ ଏହି ସଫଳ ଏକାଙ୍କିକାଟିର ଏକ ଐତିହାସିକ ମୂଲ୍ୟ ଅଛି ।

ସବୁଜ ଯୁଗର ପ୍ରେରଣାବଳେ ଏହି କାଳରେ ଆଉ କେତୋଟି ଯେ ଏକାଙ୍କିକା ଲେଖାଯାଇଛି ଏଥିରେ ସନ୍ଦେହ ନାହିଁ । ମାତ୍ର ସେଗୁଡ଼ିକ ପୁସ୍ତକାକାରରେ ପ୍ରକାଶିତ ହୋଇ ନଥିବାରୁ ଆଲୋଚନା କରିବା ସମ୍ଭବପର ନୁହେଁ । ତେବେ ଏକାଙ୍କିକା ସୃଷ୍ଟିର ଏହି ପ୍ରଥମ କାଳରେ ଯେଉଁ କେହି ବିଶେଷ ଗୌରବର ଅଧିକାରୀ, ସେ ହେଉଛନ୍ତି ପ୍ରାଣବନ୍ଧୁ କର । ତାଙ୍କର ଅନେକ ଗୁଡ଼ିଏ ଏକାଙ୍କିକା ତତ୍କାଳୀନ 'ଜାଗରଣ' 'ସହକାର' 'ନବଭାରତ' ପ୍ରଭୃତି ପ୍ରସିଦ୍ଧ ସାହିତ୍ୟ ପତ୍ର ଗୁଡ଼ିକରେ ପ୍ରକାଶ ପାଇଥିଲା । ଅବଶ୍ୟ ତାଙ୍କର ମାତ୍ର ଆଠଗୋଟି ଏକାଙ୍କିକା କଙ୍କାଳପରେ ୧୯୫୨ ସାଲରେ ପୁସ୍ତକାକାରରେ ପ୍ରକାଶିତ ହୋଇଅଛି । ସ୍ୱାଧୀନତା ପରେ ଓଡ଼ିଆ ଏକାଙ୍କିକାର ବିକାଶପାଇଁ ଅନୁକୂଳ ପରିସ୍ଥିତି ସୃଷ୍ଟି ହେଲା । ଆକାଶବାଣୀର ପ୍ରତିଷ୍ଠାପରେ ତାହାର ମାଧ୍ୟମରେ ପ୍ରଚାର ଉଦ୍ଦେଶ୍ୟରେ ଧାରାବାହିକ ଭାବରେ ବହୁ ଏକାଙ୍କିକା ରଚିତହୋଇ ଆସୁଅଛି । ଏ ଦିଗରେ ମନୋରଞ୍ଜନ ଦାସ, ଗୋପାଳ ଛୋଟରାୟ, ନରସିଂହ ମହାପାତ୍ର, ଭଞ୍ଜକିଶୋର ପଟ୍ଟନାୟକ, କାଳୀଚରଣ ପଟ୍ଟନାୟକ ପ୍ରଭୃତି ପ୍ରସିଦ୍ଧ ନାଟ୍ୟକାର ମାନଙ୍କ ସହିତ ବହୁ ନୂତନ ଲେଖକ ମଧ୍ୟ ଏହି ଦିଗରେ ଲେଖନୀ ଚାଳନା କରି ଯଶସ୍ୱୀ ହୋଇଅଛନ୍ତି । ଏତଦ୍ ବ୍ୟତୀତ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାପରେ ବହୁ ମହାବିଦ୍ୟାଳୟର ପ୍ରତିଷ୍ଠା ସହିତ ସାଂସ୍କୃତିକ ସପ୍ତାହର ଆୟୋଜନ ଉପଲକ୍ଷେ ପ୍ରତିବର୍ଷ ନୂତନ ଏକାଙ୍କିକା ଅଭିନୟର ଆବଶ୍ୟକତା ଅନୁଭୂତ ହେଲା । ତେଣୁ ବିଶ୍ୱଜିତ୍ ଦାସଙ୍କ ଭଳି ଅନେକ ତରୁଣ ଶିଳ୍ପୀ ଏକାଙ୍କିକା ପ୍ରଣୟନ କରି ସଫଳତା ଲାଭ କରିଅଛନ୍ତି । ଆକାଶବାଣୀରେ ପ୍ରଚାରିତ ଅଥବା ସ୍କୁଲ କଲେଜରେ ବିଭିନ୍ନ କାଳରେ ଅଭିନୀତ ଏକାଙ୍କିକା ପୁସ୍ତକାକାରରେ ପ୍ରକାଶିତ ନ ହେଲେ ସେମାନଙ୍କର ଆଲୋଚନା ଆଦୌ ସମ୍ଭବ ନୁହେଁ ।

ତେବେ ଏହି ଅଳ୍ପକାଳ ମଧ୍ୟରେ ଯେଉଁ ଲେଖକମାନଙ୍କର ଏକାଙ୍କିକା ସଂକଳନ ପ୍ରକାଶ ପାଇଛି, ସେମାନଙ୍କ ମଧ୍ୟରେ ପ୍ରାଣବନ୍ଧୁ କର, ହରେକୃଷ୍ଣ ମହତାବ ଜ୍ଞାନୀନ୍ଦ୍ର ବର୍ମା ଏବଂ କାଳୀଚରଣ ପଟ୍ଟନାୟକ ପ୍ରଧାନ । ପାଠ୍ୟ ପୁସ୍ତକ ଉଦ୍ଦେଶ୍ୟରେ ଏକାଧିକ ସଂକଳନ ପ୍ରକାଶିତ ହୋଇଥିଲେହେଁ ତହିଁରୁ ଜଣେ ନିର୍ଦ୍ଦିଷ୍ଟ ଲେଖକଙ୍କର ଭାବଧାରା ଆଲୋଚନା କରିବା ସହଜ ନୁହେଁ ।

## ପ୍ରାଣବନ୍ଧୁ କରଙ୍କ ସମସ୍ୟା ବହୁଳ ଏକାଙ୍କିକା:—

ଓଡ଼ିଆ ଏକାଙ୍କିକା ଆଲୋଚନା କ୍ଷେତ୍ରରେ ପ୍ରାଣବନ୍ଧୁ କର ଅଧିକ ସ୍ମରଣୀୟ । କାରଣ ପତ୍ରପତ୍ରିକା ତଥା ପୁସ୍ତିକାକାରରେ ତାଙ୍କର ଅଧିକ ଏକାଙ୍କିକା ପ୍ରକାଶିତ ହୋଇସାରିଛି । ଶୈଳୀ ଏବଂ ପ୍ରକାଶ ଦୃଷ୍ଟିରେ ପ୍ରାଣବନ୍ଧୁଙ୍କ ଏକାଙ୍କିକା ଗୁଡ଼ିକ ଅଧିକ କାବ୍ୟିକଧର୍ମୀ । ତାଙ୍କର ସଂଳାପ ଯୋଜନା ଯେପରି ପ୍ରଭାବଶାଳୀ, ବିଷୟ ଓ ଚରିତ୍ର ନିର୍ବାଚନ ମଧ୍ୟ ସେହିପରି ଅତ୍ୟନ୍ତ ଆକର୍ଷଣୀୟ ଏବଂ କଳାଧର୍ମୀ । ଜୀବନର ଦ୍ୱନ୍ଦ୍ୱ, ଜଟିଳ ସମସ୍ୟା, ସୁନ୍ଦର ପରିକଳ୍ପନା, ରାଜନୈତିକ ଘଟଣାର ବିବର୍ତ୍ତନ ଇତ୍ୟାଦି ତାଙ୍କର ବିଭିନ୍ନ ଲେଖାରେ ଚମତ୍କାର ଭାବରେ ପ୍ରତିପାଦିତ ହୋଇଅଛି । ପ୍ରାଣବନ୍ଧୁଙ୍କର ଭାଷାରେ ଅଛି ପଦେ ପଦେ ସଙ୍କେତର ସୂଚନା ଏବଂ ସଂଳାପରେ ଅଛି ଯାଦୁକରୀ ସ୍ପର୍ଶ । ମଣିଷର ସୂକ୍ଷ୍ମ ଅଥଚ ତରଳ ଅନୁଭୂତି ତାଙ୍କର ଲେଖାମାନରେ ସାର୍ଥକ ଭାବରେ ରୂପାୟିତ । ଘଟଣା ଓ ବିଷୟ ବସ୍ତୁର ସଂଘର୍ଷଣରେ ପ୍ରବୀଣ ଆର୍ଟିଷ୍ଟର କରଣୀ ରହିଛି ବୋଲି ଅନୁଭୂତ ହୁଏ । ମୋଟ ଉପରେ ପ୍ରାଣବନ୍ଧୁ ଜଣେ ସାର୍ଥକ ଶିଳ୍ପୀ ।

ଆଲୋଚନାର ସଙ୍ଗତ ପାଇଁ ତାଙ୍କର କେତେଗୋଟି ଏକାଙ୍କିକାର ବିଶ୍ଳେଷଣ କରାଯାଇ ପାରେ ।

ଯୁଗଯୁଗ ଧରି ସାହିତ୍ୟକୁ ଯେଉଁମାନେ କଳ୍ପଲୋକର ଖାଦ୍ୟ ବୋଲି ମନେ କରି ଆସିଛନ୍ତି, ସେମାନଙ୍କ ଉଦ୍ଦେଶ୍ୟରେ ପ୍ରାଣବନ୍ଧୁଙ୍କ 'ଶିଳ୍ପୀର ମୃତ୍ୟୁ' ଏକ ସ୍ପଷ୍ଟ ଉତ୍ତର । ଏହି ଏକାଙ୍କିକାଟି ପ୍ରଥମେ "ଆରତି" ସାହିତ୍ୟ ପତ୍ରର ପ୍ରଥମବର୍ଷ ପୂଜାସଂଖ୍ୟାରେ ୧୯୪୦ ମସିହାରେ ପ୍ରକାଶ ପାଇଥିଲା । ତାଙ୍କର ଶିଳ୍ପୀ ଚରିତ୍ର କଳ୍ପଲୋକର ଏକ ଭ୍ରାମ୍ୟମାଣ ଜୀବ । ଜୀବନ ସହିତ ସଂପର୍କ ରଖି ସେ ଚଳି ପାରନ୍ତି ନାହିଁ । ତାଙ୍କ ନିକଟରେ ଜୀବନ ଖାଲି ସ୍ୱପ୍ନ ଏବଂ କଳ୍ପନା । ଏଭଳି ସ୍ଥିତିରେ ସୃଷ୍ଟିଧର୍ମୀ ପ୍ରାଣବାନ ହୋଇ ପାରେନାହିଁ । "ଦିନରାତି ପ୍ରେରଣା ଆସେନି, ପାଗଳାମି ଆସେ" । ଶିଳ୍ପୀ ବାସ୍ତବ ଜୀବନର ସମସ୍ୟାକୁ ଏଡ଼ାଇ ସମାଜ, ସ୍ତ୍ରୀ, ଘର ସଂସାର ପ୍ରତି ଉଦାସୀନ ହୋଇ ପଡ଼ିଥିଲେ । ନାରୀ, ପୁରୁଷର ଘୃଣା, ଅଭିଯୋଗ, ବିଦ୍ୱେଷ, ସବୁ ସହ୍ୟ କରିପାରେ । ମାତ୍ର ଉଦାସୀନତା ତା ପକ୍ଷରେ ଅତ୍ୟନ୍ତ ଅସହ୍ୟ । ତେଣୁ ଶିଳ୍ପୀ ପତ୍ନୀ ଏହି ଉଦାସୀନତାକୁ ଆଦୌ ବରଦାସ୍ତ କରିପାରି ନାହାଁନ୍ତି । ଦୁଇଟି ଜୀବନର ଏହି ମାନସିକଦ୍ୱନ୍ଦ୍ୱ ଏଥିରେ ଅତି ନିପୁଣ ଭାବରେ ପ୍ରକାଶିତ ହୋଇଅଛି । ଶେଷରେ ଲେଖକ କଳ୍ପନା-ବିଳାସୀ ଶିଳ୍ପୀଙ୍କୁ ବାସ୍ତବ ସଂସାରକୁ ଫେରାଇ ଆଣି ସମାଧାନ କରିଛନ୍ତି । କେବଳ କଳ୍ପନାର କାଉଁରୀ ସ୍ପର୍ଶରେ ସାହିତ୍ୟ ସୃଷ୍ଟି ହୁଏନାହିଁ; ଅଭିଜ୍ଞତା, ସାମାଜିକ ଜୀବନର ବାସ୍ତବ ଅନୁଭୂତି ଶିଳ୍ପୀର ଜୀବନକୁ ଅନୁପ୍ରାଣିତ କରେ ଓ ରସୋତ୍ତୀର୍ଣ୍ଣ କରେ । ଜୀବନର ଘାତପ୍ରତିଘାତ, ସମସ୍ୟା, ଅଭାବ ଓ ଅଭିଯୋଗ ରସ ସୃଷ୍ଟିର ପ୍ରଧାନ

ଉପାଦାନ, ବାସ୍ତବ ଜୀବନ ସମ୍ପୃକ୍ତ ସାହିତ୍ୟର ଅତି ନିବିଡ଼ ସଂପର୍କ । ପ୍ରାଣବନ୍ଧୁଙ୍କର ଅନ୍ୟ ଏକ ସାର୍ଥକ ରଚନା "ସନ୍ଧ୍ୟା" ଏହି ଲେଖାଟି ପ୍ରଥମେ "ସହକାର" ମାସିକ ପତ୍ରର ୨୦ଶ ଭାଗ ୨ୟ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ସମାଜର ତଳ ସ୍ତରରେ ଯେଉଁମାନେ ଅବହେଳିତ ଅବସ୍ଥାରେ ଅଛନ୍ତି, ଲେଖକ ସେମାନଙ୍କର ଜୀବନର ସୁଖ, ଦୁଃଖ ପ୍ରଣୟର ଅଭିସାର, ଆଶା ଆକାଂକ୍ଷା ଅତି ଜୀବନ୍ତ ଭାବରେ ଚିତ୍ରଣ କରିଅଛନ୍ତି । ବାଉରୀ ଘରର ପୁଅ 'ସନ୍ଧ୍ୟା' । ତାର ନୂତନ ଯୌବନର ସ୍ୱପ୍ନକୁ ସାର୍ଥକ କରି ଘରଣୀ ହୋଇ ଆସେ 'ସୁଲେଇ' । ସେ ଯୁଆନ ମାଇପିଟାଏ ସତେ ଯେପରି ସୌନ୍ଦର୍ଯ୍ୟରେ ଫାଟି ପଡୁଛି । 'ସନ୍ଧ୍ୟା'ର ସ୍ୱପ୍ନ କେବଳ ପ୍ରାଣ ବନ୍ଧୁଙ୍କ ମାନସ ସନ୍ତାନର ନିଜସ୍ୱ ଅନୁଭୂତି ନୁହେଁ । ଏହା ସମଗ୍ର ସମାଜର ଶତ ଶତ 'ସନ୍ଧ୍ୟା'ଙ୍କ ଜୀବନରେ ପ୍ରତିଫଳିତ । "ଏତେଡ଼ ସୁଲୁସୁଲିଆ ପବନ, ସୁଲେଇ ଆସି ଟିକିଏ ପାଖରେ ବସନ୍ତା ନାହିଁ ?—ଖାଲି ଗୁଞ୍ଜି ହୋଇଥିବ ବୋଉପାଖେ । ଆମଘରକୁ ଅଇଲଦିନୁ ଆହୁରି ଗୋରି ଫିଟିଯାଇଛି । —ଭାରି ନଟେଇଲା ପଢର ବାଜିଯିବ ସହରକୁ । ମୋ ମନ ଭାରି ଗୁଡ଼ରୁ ପୁଡ଼ରୁ ହଉଚି ଏକ-ଇଞ୍ଚେ ବୋଉଟେ— ବଜାସ୍ଥି ଗୁଡ଼ାକ ଶୋଷି ନେଇଯିବ ତାକୁ—କେତେବେଳେ କଅଣ ଥାଏ ଯୁଆନ ମାଇପିଟାଏ—ଫାଟିପଡୁଛି । ଯାହା ହେଉଚି ସିଏ । ମୁଁ ତ ଦଣ୍ଡେ ନ ଦେଖିଲେ 'ସନ୍ଧ୍ୟାର ସନ୍ଦେହ ବାସ୍ତବତାରେ ପରିଣତ ହୋଇଛି । ଯେତେବେଳେ ସୁଲେଇ ଯାଇଛି ସହରକୁ ପଢର ଶିକ । ସନ୍ଧ୍ୟାର ସଂସାରକୁ ଚୂରମାର କରି ସୁଲେଇ ବାହାରିଯାଏ ପଠାଣ ସାଙ୍ଗରେ । ଲଗାମ ଛାଡ଼ିଲେ ସ୍ତ୍ରୀ ଜାତିକୁ ବିଶ୍ୱାସ ନାହିଁ । ସେଥିପାଇଁ ସ୍ତ୍ରୀକୁ ଅଗେ ଆଗେ ରଖାଯାଇ

ପୁରୁଷର କାମନା । ଯୌବନର ମତ୍ତ ଏ ନିଶା ଅପସରି ଗଲାପରେ ସୁଲେଇ ନିଜର ଭୁଲପାଇଁ ଅନୁତାପ କରୁଛି । ଦାଣ୍ଡରେ ଭଗ୍ନାସ୍ଥ ହୋଇସୁଦ୍ଧା ସନ୍ଧ୍ୟା ସୁଲେଇକୁ କ୍ଷମା ଦେଇ ଗ୍ରହଣ କରୁଛି । "ଦଶବର୍ଷପରେ" ଏକାଙ୍କିକାରେ ସାମନ୍ତିକ ରାଜମାତାର ଛବି ଦେଖିବାକୁ ମିଳେ । ଏଥିରେ ସ୍ୱାଧୀନତା ପର ଯୋଜନାବଦ୍ଧ ସମାଜରେ ଯେଉଁ ଅଭାବନୀୟ ପରିବର୍ତ୍ତନ ଘଟିଯାଉଛି, ତାହାର ଏକ ସୁନ୍ଦର କଳ୍ପନା କରିଛନ୍ତି ମାତ୍ର ଦଶବର୍ଷପାଇଁ । ସେତେବେଳେ ଅଙ୍ଗାରଗଡ଼ ରାଜପରିବାରର ପୁତ୍ର ଯୋଗର ସାଧାରଣ ପରିବାରର ଝିଅ ସହିତ ପ୍ରେମ ରଚନା କରେ । ସେହି ଶିଳ୍ପ ସମୃଦ୍ଧ ସମାଜରେ ସ୍ୱଚ୍ଛନ୍ଦ ବିଚରଣ ଏକ ଚହଳ ସୃଷ୍ଟିକରେ । ଏହାଛଡ଼ା ଜାତୀୟକରଣ ଏବଂ ସମାଜବାଦୀ ରାଷ୍ଟ୍ରର ସ୍ୱପ୍ନ ଦେଖିଛନ୍ତି ଲେଖକ ଆଲୋଚ୍ୟ ଏକାଙ୍କିକାଟିରେ । ରାଜନୈତିକ ଜୀବନକୁ ବ୍ୟଙ୍ଗ୍ୟ କରିବାରେ "ପ୍ରହରଦାସ" ତାଙ୍କର ଅନ୍ୟ ଏକ ସାର୍ଥକ ରଚନା । ମୋଟ ଉପରେ କେବଳ ସାହିତ୍ୟ ଦୃଷ୍ଟିରୁ ନୁହେଁ, ଅଭିନୟ ଦୃଷ୍ଟିରେ ମଧ୍ୟ ପ୍ରାଣବନ୍ଧୁଙ୍କ ଏକାଙ୍କିକା ଅତ୍ୟନ୍ତ ଉଚ୍ଚକୋଟିର ।

## ହରେକୃଷ୍ଣ ମହତାବ ଓ ମନସ୍ତାତ୍ତ୍ୱିକ ଏକାଙ୍କିକା

ଓଡ଼ିଆ ଏକାଙ୍କିକା ସାହିତ୍ୟରେ ହରେକୃଷ୍ଣ ମହତାବଙ୍କର ଏକ ସ୍ୱତନ୍ତ୍ର ସ୍ଥାନ ରହିଅଛି । ସ୍ୱାଧୀନତା ପରେ ଝଙ୍କାର ସାହିତ୍ୟ-ପତ୍ରିକାର ବିଭିନ୍ନବର୍ଷରେ କେତେଗୁଡ଼ିଏ ସଂଖ୍ୟାରେ ତାଙ୍କର ଏକାଙ୍କିକା ଗୁଡ଼ିକ ପ୍ରଥମେ ପ୍ରକାଶିତ ହୋଇଥିଲା । ଅବଶ୍ୟ ତାଙ୍କର ଦଶଗୋଟି ଏକାଙ୍କିକାକୁ ଏକାଠି କରି "ଯୁଗସଙ୍କେତ" ନାମରେ ଏକ ସଂକଳନ ପ୍ରଜାତନ୍ତ୍ର ପ୍ରଚାର ସମିତି ୧୯୫୯ମସିହାରେ ପୁସ୍ତକାକାରରେ ପ୍ରକାଶ କଲେ । ନାନା ସାମାଜିକ ସମସ୍ୟା ଏବଂ

ମନସ୍ତାତ୍ତ୍ୱିକ ବିଶ୍ଳେଷଣକୁ କେନ୍ଦ୍ର କରି ମହତାବଙ୍କ ଏକାଙ୍କିକା ଗୁଡ଼ିକ ରଚିତ । ତାଙ୍କର ଅଧିକାଂଶ ଏକାଙ୍କିକା ରୂପକଧର୍ମୀ ଓ ସଂସ୍କାର ମୂଳକ । ସାଂପ୍ରତିକ ରାଜନୀତି, ନାନା ସାମାଜିକ ସମସ୍ୟା, ଯୁଗ ଯୁଗର ସମସ୍ୟା ଉପରେ ଆଧୁନିକ ମଣିଷ ମନର ପ୍ରତିକ୍ରିୟା, ସ୍ୱାଧୀନତାପର ସମାଜର ଜନଜାଗୃତି ଏବଂ ଲୋକମନର ବିଶ୍ଳେଷଣ ଇତ୍ୟାଦି ରୂପାୟିତ କରିବାରେ ମହତାବ ଅତ୍ୟନ୍ତ ସିଦ୍ଧହସ୍ତ । ଗତାନୁଗତିକ ଏକାଙ୍କିକା ରଚନା ଠାରୁ ସେ ଏକ ଉଜ୍ଜ୍ୱଳ ବ୍ୟତିକ୍ରମ । ମହତାବଙ୍କ ଏକାଙ୍କିକା ଶଦ୍ରାରାଜ୍ୟକୁ ନୂତନ ଖୋରାକ ପ୍ରଦାନ କରେ । ଦୀର୍ଘ ସଂଳାପ ଯୋଜନା ଏବଂ ସାମୟିକ ନୀରସ ଦାର୍ଶନିକ ଭାବନାର ପ୍ରଚୁର ମହତାବଙ୍କ ଏକାଙ୍କିକାର ତ୍ରୁଟି ବୋଲି ଗ୍ରହଣ କରାଯାଇ ପାରେ; ମାତ୍ର କଳା ଦୃଷ୍ଟିରେ ତାଙ୍କର କଥାବସ୍ତୁ, ବିଷୟର ସମାବେଶ, ମାନସିକ ବିଶ୍ଳେଷଣ ଏବଂ ସବୋପରି ନାନା ସମସ୍ୟାର ସୁସଜ୍ଜିତ ଓ ପ୍ରାଞ୍ଜଳ ପରିବେଷଣ ଅତ୍ୟନ୍ତ ରସଧର୍ମୀ । ତାଙ୍କର "ରୂପାନ୍ତର", 'ଇତିହାସର ପରିହାସ" 'ଗନ୍ତାଘର', 'ବାସ୍ତବିକ', "ଯୁଗସଙ୍କେତ', ପ୍ରଭୃତି ଏକାଙ୍କିକା ଗୁଡ଼ିକ ସାଂପ୍ରତିକ ଯୁଗର ନୂତନ ସଙ୍କେତ ବହନ କରିଅଛନ୍ତି । ବାସ୍ତବପକ୍ଷେ ତାଙ୍କର ଏକାଙ୍କିକା ଗୁଡ଼ିକରେ ପ୍ରଚଳିତ ଯୁଗର ସାଂସ୍କୃତିକ, ରାଜନୈତିକ ଓ ସାମାଜିକ ଜୀବନର ନାନା ଘାତ ପ୍ରତିଘାତ ରୂପାୟିତ ହୋଇଥିବାରୁ ତାଙ୍କ ପୁସ୍ତକର ନାମକରଣ "ଯୁଗସଙ୍କେତ" ଯଥାର୍ଥ ହୋଇଅଛି । ଚିରାଚରିତ ପ୍ରଣୟ ମୂଳକ କଥାବସ୍ତୁକୁ ଗ୍ରହଣ ନକରି ହରେକୃଷ୍ଣ ମହତାବ ମଣିଷର ମାନସିକ ବିବର୍ତ୍ତନ ଏବଂ ଚିନ୍ତାର ପ୍ରତିକ୍ରିୟାକୁ ଗ୍ରହଣ କରିଅଛନ୍ତି । ଏ ଦିଗରେ ସେ ହେଉଛନ୍ତି ପ୍ରଥମ ସାର୍ଥକ ଶିଳ୍ପୀ । ଜାତିତ୍ରାଣ, ଧର୍ମାନ୍ଧତା, ନାରୀ ଜାଗରଣ, ସାମ୍ୟବାଦର ଅଭ୍ୟୁଦୟ ପ୍ରଭୃତି ନାନା ଘଟଣାବଳୀ ତାଙ୍କର

"ରୂପାନ୍ତର" ଏକାଙ୍କିକାର ଗୌରବ ବର୍ଦ୍ଧନ କରିଅଛି । ସେହିପରି "ଇତିହାସର ପରିହାସ" ଏକାଙ୍କିକାରେ ଇତିହାସ ନିଜେ ରୂପ ପରିଗ୍ରହ କରି ପାଠକ ସମକ୍ଷରେ ଦଣ୍ଡାୟମାନ । 'ବୃଦ୍ଧ' ରୂପରେ ଇତିହାସ ଏବଂ ଯାତ୍ରୀ ରୂପରେ "ବିଂଶ ଶତାବ୍ଦୀ"ର ଅବତାରଣା ଛଳରେ ସେ ଆଧୁନିକ ରାଜନୈତିକ ଭାରତର କଥା ଶୁଣାଇ ଛନ୍ତି । ଇତିହାସର ପୁନରାବୃତ୍ତି କାଳ ସ୍ରୋତରେ ଏକ ମହାନ ସତ୍ୟ । 'ଇତିହାସ' ଯେପରି ତାହାହିଁ ପରିହାସ ଛଳରେ ଶୁଣାଇଅଛି । "ବାସ୍ତବିକ" ରେ ସେହିଭଳି ଆଦର୍ଶ ଓ ବାସ୍ତବ ଜୀବନ ସଂଘର୍ଷ ସୂକ୍ଷ୍ମ ବିଶ୍ଳେଷଣ ମାଧ୍ୟମରେ ରୂପାୟିତ । ତେବେ ମହତାବଙ୍କ ଏକାଙ୍କିକା ନାନା ସାଂସ୍କୃତିକ ଅନୁଷ୍ଠାନରେ ଅଭିନୀତ ହୋଇଥିଲେ ହେଁ ସଂଳାପ ଯୋଜନାର ଦୁର୍ବଳତା ଯୋଗୁ ତାହାକୁ ଦୃଶ୍ୟ-ରଚନା ଅପେକ୍ଷା ପାଠ୍ୟ-ରଚନାର ଅଧିକ ସମ୍ମାନ ଅର୍ପଣ କରିଥାଏ ।

## କାଳୀଚରଣ ପଟ୍ଟନାୟକଙ୍କ "ପଞ୍ଚରଙ୍ଗ" ଓ ଜ୍ଞାନୀନ୍ଦ୍ର ବର୍ମାଙ୍କ "ସ୍ୱର୍ଗର ଲୋତକ"—

୧୯୪୩ ସାଲରେ ପାଞ୍ଚଗୋଟି ଏକାଙ୍କିକାର ସମାହାର "ପଞ୍ଚରଙ୍ଗ" ପ୍ରକାଶିତ ହୋଇଥିଲା । "କଳା ନାହିଁ", "ମନ୍ଦିର ପ୍ରବେଶ", "ଦଳବେହେରା" "ଦେବତାର ତଳେ" ଏବଂ "ଛନ୍ନଛଡ଼ା" ଶୀର୍ଷକ ପାଞ୍ଚଗୋଟି ରଚନା ଏହି ପୁସ୍ତକର ଅନ୍ତର୍ଗତ । ଏହି ସଂକଳନରେ ବିଷୟ ନିର୍ବାଚନରେ କୌଣସି ସାମ୍ୟ ବା ନିର୍ଦ୍ଦିଷ୍ଟ ଧାରା ଲକ୍ଷିତ ହୁଏ ନାହିଁ । ଏଥିରେ ମଧ୍ୟଯୁଗୀୟ ଇତିହାସ, ଇଂରେଜୀ ଅମଳର ଲୋକ କାହାଣୀ, ପୁରାଣର ସଂସ୍କାର ଭାବନା ଅଥବା ଅଧୁନିକ ସମାଜର ନେତୃପୁରୁଷଙ୍କର କୌଣସି ମହମାୟୁ

ଘଟଣା ଲିପିବଦ୍ଧ ହୋଇଅଛି । ଲେଖକ ଜଣେ ପ୍ରସିଦ୍ଧ ନାଟ୍ୟକାର । ଲୋକମନରେ ସେ ଜଣେ ରହସ୍ୟର ଗ୍ରାହକ ଏବଂ ଖାଣ୍ଟି ପରସୁଣିଆ । ତେଣୁ ଯେତେବେଳେ ଯେଉଁ କଥାଟି ତାଙ୍କ ମନକୁ ସ୍ପର୍ଶ କରିଛି ଏବଂ ସାଧାରଣ ପାଠକକୁ ଚେତାଇବ ବୋଲି ସେ ବିଶ୍ୱାସ କରିଛନ୍ତି, ତାହାକୁ ଏକାଙ୍କିକା ରୂପ ଦେବାପାଇଁ ସେ ଆଗ୍ରହୀ ହୋଇଛନ୍ତି । ତାଙ୍କର ସଂଳାପ ଯୋଜନା ଯେପରି ସାର୍ଥକ, ବିଷୟ ପରିବେଷଣରେ ଜାତୀୟତାବୋଧ, ସଂସ୍କାର ଭାବନା ଏବଂ ସାମାଜିକଚେତନା ମଧ୍ୟ ସେହିପରି ଉଲ୍ଲେଖ ଯୋଗ୍ୟ । ଦୃଶ୍ୟ ଏବଂ ପାଠ୍ୟ, ଉଭୟ ଦୃଷ୍ଟିରୁ କାଳୀଚରଣଙ୍କ ରଚନା ଅତୁଳନୀୟ । ପ୍ରମୋଦ ବର୍ମା ଅଧିକ କାବ୍ୟଧର୍ମୀ ଓ କଳ୍ପନା ପ୍ରୟାସୀ । ବିଷୟବସ୍ତୁର ପରିବେଷଣରେ ସେ ସମ୍ପୂର୍ଣ୍ଣ ରୋମାଣ୍ଟିକ । ମାତ୍ର ତିନୋଗୋଟି ଏକାଙ୍କିକାରୁ ତାଙ୍କ ରଚନାରେ ଏକ ନିର୍ଦ୍ଦିଷ୍ଟ ଶୈଳୀ ବିଚାର କରିବା ସହଜ ନୁହେଁ ।

ସଂକଳିତ ପୁସ୍ତକର ଅଭାବରେ ବହୁ ଏକାଙ୍କିକା ଲେଖକଙ୍କୁ ଆଲୋଚନା କରିବାର ସୁଯୋଗ ନାହିଁ, ତଥାପି ଏକଥା ସ୍ୱୀକାର୍ଯ୍ୟ ଯେ ଦ୍ୱିତୀୟ ମହାଯୁଦ୍ଧପରେ ଓଡ଼ିଆ ସାହିତ୍ୟରେ ଏକାଙ୍କିକାର ଅଗ୍ରଗତି ଅତ୍ୟନ୍ତ ଆଶା ଜନକ । ଆଧୁନିକ ଶିଳ୍ପ ସଭ୍ୟତା ପ୍ରଭାବିତ ସମାଜ ଓ ଶିକ୍ଷାନୁଷ୍ଠାନର ସମୃଦ୍ଧି ସହିତ ଏକାଙ୍କିକାର ସମୃଦ୍ଧ ଭବିଷ୍ୟତ ଯେ ଅତ୍ୟନ୍ତ ନିବିଡ଼ ଭାବରେ ଜଡ଼ିତ, ଏଥିରେ ଅଦୌ ସନ୍ଦେହ ନାହିଁ । ତେଣୁ ଉଭୟ ସଂଖ୍ୟା ଏବଂ କଳାଧର୍ମ ଦୃଷ୍ଟିରୁ ଆଧୁନିକ ଓଡ଼ିଆ ସାହିତ୍ୟରେ ଏକାଙ୍କିକା ବିଭାଗଟି ଯେ ଆଶାତୀତ ବିକାଶପ୍ରାପ୍ତ ଏ କଥା ସ୍ୱୀକାର କରିବାକୁ ହେବ ।

— × —

# ସାହିତ୍ୟରେ ସଙ୍କଟ

ଏ ଯୁଗରେ ଯୁକ୍ତରାଷ୍ଟ୍ର ଆମେରିକା ପୃଥିବୀରେ ଅତି ସମୃଦ୍ଧ ଓ ଶକ୍ତିଶାଳୀ ସଭ୍ୟ ରାଷ୍ଟ୍ରଭାବରେ ସୁପରିଚିତ । ତେଣୁ ପୃଥିବୀର ଅଧିକାଂଶ ରାଷ୍ଟ୍ରର ନେତା ଭାବରେ ଯୁକ୍ତରାଷ୍ଟ୍ର ଆମେରିକା ପୃଥିବୀ ପଞ୍ଚାୟତରେ ପ୍ରତିଷ୍ଠିତ । ଭୌତିକ ବିଜ୍ଞାନ ବଳରେ ଯୁକ୍ତରାଷ୍ଟ୍ର-ଅଧିବାସୀ ଏତେ ପ୍ରଖର ଗତିରେ ଧାବମାନ ଯେ, ସେଠାରେ ସାମାନ୍ୟ କିଛି ଘଟଣା ବା ଦୁର୍ଘଟଣା ଘଟିଲେ ତାହା ସମଗ୍ର ଆନ୍ତର୍ଜାତିକ ବଜାର ଓ ସମାଜକୁ ଅନୁପ୍ରାଣିତ କରିଥାଏ ଏଣୁ ଯୁକ୍ତରାଷ୍ଟ୍ର ସଭ୍ୟ ସମାଜରୁ ଆମଦାନୀ ଚିନ୍ତାଧାରା ଯେ, ବହୁ ପରିମାଣରେ ପୃଥିବୀର ସଭ୍ୟତାକୁ ନିୟନ୍ତ୍ରଣ କରୁଛି ଓ କରିବ ଏଥିରେ ଆଦୌ ସନ୍ଦେହ ନାହିଁ । ସେହି ଦେଶ ସମ୍ପର୍କରେ ଅଳ୍ପଦିନ ତଳେ ସମ୍ବାଦପତ୍ରରେ ଏକ ଚମତ୍କାର ସମ୍ବାଦ ପ୍ରଚାରିତ ହୋଇଥିଲା । ସେଥିରେ କୁହାଯାଇଥିଲା ଯେ, 'ଯୁକ୍ତରାଷ୍ଟ୍ର ଆମେରିକାରେ ପ୍ରତି ଚଉତିରିଶ ମିନିଟରେ ଗୋଟିଏ ନାରୀ ଧର୍ଷଣ ହୁଏ, ପ୍ରତ୍ୟେକ ଅଠାବନ ମିନିଟରେ ଗୋଟିଏ ନରହତ୍ୟା ହୁଏ ।' ଯେଉଁ ଦେଶ ବୈଜ୍ଞାନିକ ପ୍ରଗତିରେ ସମଗ୍ର ପୃଥିବୀର ଅଗ୍ରଗାମୀ, ଚନ୍ଦ୍ର ଓ ମଙ୍ଗଳ ଗ୍ରହରେ ପଦାର୍ପଣ କରିବା ପାଇଁ ଯେଉଁ ଦେଶର ସାହସୀ ଓ ବୁଦ୍ଧିମାନ ସନ୍ତାନ ପକ୍ଷରେ ଆଜି ଅଧିକ ଦିନ ଡେରି ନାହିଁ, ପରମାଣୁ

ଶକ୍ତି ବନିଯୋଗ କରି ଯେଉଁ ଦେଶର ସାମାଜରେ ମଣିଷ କଳ୍ପନା-ତୀତ ସୁଖ ଓ ସୌଭାଗ୍ୟର ଅଧିକାରୀ, ସେହି ଦେଶରେ କେଉଁ ଦୁଃଖରେ ସଭ୍ୟ ମନୁଷ୍ୟ ଏତେ ମାତ୍ରାରେ ଉନ୍ମାଦ ହୋଇଆସି ଏତେ ବ୍ୟାପକ ପରିମାଣରେ ନରହତ୍ୟା ଏବଂ ନାରୀ ଧର୍ଷଣ କରିବାକୁ କୁଣ୍ଠିତ ହେଉନାହିଁ । ସେଦିନ ପରି ଅନ୍ୟ ଗୋଟିଏ ସମ୍ବାଦରେ ପ୍ରକାଶ ପାଇଥିଲା ଯେ, ବର୍ତ୍ତମାନ ଆମେରିକାର ସମାଜରେ ତୁଳନାତ୍ମକ ଭାବରେ ପୃଥିବୀରେ ସବୁଠାରୁ ଅଧିକ ମାନସିକ ରୋଗୀ ଦେଖା-ଯାଉଛନ୍ତି । ଏହାର ମଧ୍ୟ କାରଣ କଣ ! ଐଶ୍ୱର୍ଯ୍ୟର ଚରମ ସୋପାନରେ ଉପନୀତ ହୋଇ ଅପରିମିତ ଶକ୍ତି ଓ କ୍ଷମତାର ଅଧିକାରୀ ଭୌତିକ ସଭ୍ୟସମାଜର ନେତା ଆମେରିକା ଯୁକ୍ତରାଷ୍ଟ୍ରରେ କେଉଁ ଅଭାବରୁ ଏତେ ପରିମାଣରେ ଲୋକ ମାନସିକ ରୋଗରେ ଆକ୍ରାନ୍ତ ହୋଇ ପଡ଼ୁଛନ୍ତି । ବହୁଦିନ ପୂର୍ବେ ଇଉରୋପରେ ଶିଳ୍ପ-ବିପ୍ଲବ ଆରମ୍ଭ ହୋଇଥିବାରୁ ଇଉରୋପ ଓ ଆମେରିକାର ସମାଜ ଶିଳ୍ପସଭ୍ୟତା ପ୍ରତିଷ୍ଠା କରିବାରେ ଅଗ୍ରଣୀ । ଆମେରିକାର ସମାଜ ବିଷୟରେ ଯାହା କୁହାଯାଇଛି । ଇଉରୋପୀୟ ସମାଜ ମଧ୍ୟ ଅଳ୍ପବହୁତେ ସେହି ଦୋଷରେ ଆକ୍ରାନ୍ତ ହୋଇ ପଡ଼ୁଅଛି । ଦ୍ୱିତୀୟ ମହାଯୁଦ୍ଧ ପରେ ଏସିଆ ମହାଦେଶରେ ସେହି ଭୌତିକ ସଭ୍ୟତାର ପ୍ରତିଷ୍ଠା ପାଇଁ ପ୍ରଚଣ୍ଡ ଉଦ୍ୟମ ଚାଲିଅଛି । ଫଳରେ ଏହି ଶିଳ୍ପ ସଭ୍ୟତାର ବିକାଶ ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ସ୍ୱାଭାବିକ ପ୍ରତି-କ୍ରିୟା ମଧ୍ୟ ଏ ଦେଶରେ ଦେଖାଦେବ । ବର୍ତ୍ତମାନର ଅଶାନ୍ତ ପୃଥିବୀରେ ଏ ଦୁଃଖର ଏକମାତ୍ର କାରଣ ହେଉଛି The death of the moral man ନୈତିକ ମଣିଷର ମୃତ୍ୟୁ । ଧର୍ମର ପ୍ରଭାବ ଥିବା ପର୍ଯ୍ୟନ୍ତ ବ୍ୟକ୍ତି ବ୍ୟକ୍ତି ଜାତି ଜାତି ମଧ୍ୟରେ ଯେଉଁ ସ୍ନେହ ଓ ସହାନୁ-ଭୂତି ଭଗବତ ଆଶକ୍ତି ରକ୍ଷଣ କରୁଥିଲା, ବିଜ୍ଞାନର ପ୍ରସାରରେ

କ୍ରମଶଃ ତ ହା ନଷ୍ଟ ହୋଇଯାଉଛି । ତେଣୁ ପୃଥିବୀରୁ ଏ ଦୁଃଖ ଦୂର କରିବା ପାଇଁ ବର୍ତ୍ତମାନ ଏକମାତ୍ର ଉପାୟ ହେଉଛି ସାହିତ୍ୟରେ ବଳିଷ୍ଠ ନେତୃତ୍ୱ । ସବୁ ଯୁଗରେ ଜାତୀୟ ସଙ୍କଟ ସମୟରେ ସାହିତ୍ୟ ନେତୃତ୍ୱ ଦେଇଥାଏ । ସାହିତ୍ୟରେ ସେହି ଗଠନମୂଳକ ତଥା ମାନବୀୟଭୂମିକା ଜାତିକୁ ବହୁ ଧ୍ୱଂସକ୍ଷ ମୁହୂର୍ତ୍ତରୁ ଉଦ୍ଧାର କରିବାକୁ କ୍ଷମ ହୋଇଥାଏ । କିନ୍ତୁ ପୃଥିବୀର ଚିନ୍ତାଶୀଳ ଲୋକେ ଆଧୁନିକ ସାହିତ୍ୟରେ ଏପରି କିଛି ଅଭାବ ଉପଲବ୍‌ଧି କରୁଛନ୍ତି, ଯେଉଁଥିପାଇଁ ସାହିତ୍ୟରେ ସେ ପ୍ରକାର ନେତୃତ୍ୱ ସମ୍ଭବ ହେଉନାହିଁ; ଅବସାଦଗ୍ରସ୍ତ ଅଶାନ୍ତ ମନୁଷ୍ୟର ପ୍ରାଣରେ ଶାନ୍ତିର ଭାବଧାରା ସଞ୍ଚାରିତ କରିବା ପାଇଁ ଆଧୁନିକ ସାହିତ୍ୟ ପ୍ରସ୍ତୁତ ହୋଇ ପାରୁନାହିଁ । ସେଥିପାଇଁ ବର୍ତ୍ତମାନ ଜାଗତିକ ସଂଘର୍ଷ ସହିତ ସାହିତ୍ୟର ଏହି ସଙ୍କଟ ଆଲୋଚନା କରିବା ଆବଶ୍ୟକ ହୋଇ ପଡ଼ିଛି ।

## ଏ ସଙ୍କଟର କାରଣ—

ଶିଳ୍ପ ସଭ୍ୟତାର ପ୍ରସାର ଏବଂ ଅଳ୍ପକାଳ ମଧ୍ୟରେ ଦୁଇଟି ବିଶ୍ୱଯୁଦ୍ଧ ଫଳରେ ପୃଥିବୀର ସାମାଜିକ ଜୀବନ ନାନା ଅଭାବନୀୟ ପରିବର୍ତ୍ତନର ସମ୍ମୁଖୀନ ହୋଇଅଛି । ପ୍ରାଚୀନ ଅନୁଷ୍ଠାନ, ବିଶ୍ୱାସ ଓ ପରମ୍ପରା ଭୁଷୁଡ଼ି ପଡ଼ିବା ସଙ୍ଗେ ସଙ୍ଗେ ସେହି ସ୍ଥାନରେ କେତେ ନୂତନ ଭାବଧାରା ସମାଜର ଗତିପଥକୁ ନିୟନ୍ତ୍ରଣ କରି ଅଛନ୍ତି । ପୂର୍ବ ସମାଜରେ ସମାଜର ମୁଷ୍ଟିମେୟ ଲୋକେ ଶିକ୍ଷା ଲାଭ କରିବା ପାଇଁ ଅଧିକାରୀ ଥିଲେ । ମାତ୍ର ଏ ଯୁଗରେ ଶିକ୍ଷାର ପ୍ରସାର ଅତ୍ୟନ୍ତ ବ୍ୟାପକ ହୋଇ ପଡ଼ିବା ସଙ୍ଗେ ସଙ୍ଗେ ଜନଜାଗୃତି ସମ୍ଭବ ହୋଇଅଛି । ଯାନ୍ତ୍ରିକ ସଭ୍ୟତା ମୁଦ୍ରାଯନ୍ତ୍ରର ପ୍ରତିଷ୍ଠା କରିବାରୁ ଦେଶରେ ଶିକ୍ଷାର ପ୍ରସାର ଯେପରି ସୁଲଭ ହୋଇଅଛି, ସମ୍ବାଦ ପତ୍ରର ବହୁଳ

ପ୍ରଭାବ ଫଳରେ ସାଧାରଣ ଚେତନା ବୈପ୍ଳବିକ ରୂପ ଧାରଣ କରିଅଛି । ଶିଳ୍ପ ସଭ୍ୟତାରେ ଜୀବନ ଅତ୍ୟନ୍ତ ସଂକଟ ଓ ଜଟିଳତା ପୂର୍ଣ୍ଣ । ଆଧୁନିକ ସମାଜରେ ତେଣୁ ଯାନ୍ତ୍ରିକ ସମାଜର ମନୁଷ୍ୟ ଯଥେଷ୍ଟ ଅବସର ପାଏନାହିଁ । ଅଥବା କର୍ମବହୁଳ ଜୀବନରେ ଅଧିକ ଗୁରୁତ୍ୱପୂର୍ଣ୍ଣ ବିଷୟରେ ଅବଗାହି ହେବାକୁ ଆଗ୍ରହୀ ହୁଏ ନାହିଁ । ତେଣୁ ସେମାନେ ରୁଚିବୋଧକୁ ସନ୍ତୁଷ୍ଟ କରିବା ପାଇଁ ସହଜ, ଅଶ୍ଳୀଳତାପୂର୍ଣ୍ଣ ସାହିତ୍ୟର ଯଦି ଯଥେଷ୍ଟ ଆମଦାନୀ ହେଉଛି, ଏଥିରେ ବିଚିତ୍ରତା କିଛି ନାହିଁ । ଶିଳ୍ପ ସଭ୍ୟତା ଯୁଗର ସାହିତ୍ୟରେ ଯେ ଯଥେଷ୍ଟ ଅପରାଧ ମନୋବୃତ୍ତି ପ୍ରକାଶ ପାଇବ, ତାହା ସ୍ୱାଭାବିକ କାରଣ ଶିଳ୍ପ-ସଭ୍ୟତା ମନୁଷ୍ୟ ମନରେ ଯେଉଁ ଉତ୍ତେଜନା ସୃଷ୍ଟି-କରେ, ସେ ମନୋଭାବ ଅପରାଧ ଜନିତ ପ୍ରତିକ୍ରିୟା ପାଇଁ ଅବଶ୍ୟ ଦାୟୀ । ବୋଧହୁଏ ଏହି କାରଣରୁ ଏ ଯୁଗର ସାହିତ୍ୟରେ ରହସ୍ୟ ରୋମାଞ୍ଚକର ଗଳ୍ପ ଓ ଉପନ୍ୟାସର ଆମଦାନୀ ଯେତିକି ବେଶୀ, ଯୌନ ବିଭତ୍ସତା ପୂର୍ଣ୍ଣ ଚଳଚିତ୍ରର ପରିଦର୍ଶନ ତାହାଠାରୁ ଆହୁରି ଅଧିକ । ଏହା ଯେ କ୍ରମଶଃ ସମାଜରେ ଅସ୍ୱାସ୍ଥ୍ୟକର ଭାବଧାରା ପ୍ରଚୁର କରି ଏ ଯୁଗର ସଭ୍ୟ ମନୁଷ୍ୟର ମନକୁ ବିଷାକ୍ତ ବିକଳାଙ୍ଗ କରିଦେବ, ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

## ଏ ଯୁଗର ନୈରାଶ୍ୟବାଦ

ସ୍ୱାଧୀନତା ପରେ ଶିଳ୍ପର ପ୍ରସାର ଓ ଶିକ୍ଷାର ବିସ୍ତାର ଅବଶ୍ୟ ଉଲ୍ଲେଖଯୋଗ୍ୟ । ମାତ୍ର ତାହା ସତ୍ତ୍ୱେ ଦେଶରେ ପଞ୍ଚବାର୍ଷିକ ଯୋଜନାର କାର୍ଯ୍ୟକାରିତା ଫଳରେ ଜନସାଧାରଣଙ୍କ ଉପରେ କରଭାର ଯେ ଅତିଶୟ ଅନୁଭୂତ ହେଉଅଛି ଏଥିରେ

ସନ୍ଦେହ ନାହିଁ । ସାଧାରଣ ଜୀବନର ଚଳଚଳର ମାନ କ୍ରମଶଃ ବୃଦ୍ଧି ଲାଭ କରିଥିଲେ ହେଁ ଲୋକଙ୍କର ଅଭାବ ଅସୁବିଧା ଅଧିକ ଜଟିଳ ଆକାର ଧାରଣ କରିଅଛି । ପୂର୍ବାପେକ୍ଷା ବହୁ ଗୁଣରେ ବେକାର ସଂଖ୍ୟା ବୃଦ୍ଧିଲାଭ କରିଥିବାରୁ ଦେଶରେ ଶିକ୍ଷିତ ଅଶିକ୍ଷିତ ନିର୍ବିଶେଷରେ ନୈରାଶ୍ୟବାଦ ହେବା ପରିଦୃଷ୍ଟ ହୁଏ । ଏହାଛଡ଼ା ପୃଥିବୀର ବିଭିନ୍ନ ଶକ୍ତି ଗୋଷ୍ଠୀ ମଧ୍ୟରେ ଶୀତଳ ଯୁଦ୍ଧର ମାଧ୍ୟମରେ ଯେଉଁ ସାମରିକ ସଜବାଜ ଚାଲିଛି, ତାହା ଯେକୌଣସି ମନୁଷ୍ୟର ପ୍ରାଣରେ ସନ୍ଦେହ ଓ ଭୟ ସଞ୍ଚାର କରିବ । କାରଣ ଆଉ ଥରେ ପୃଥିବୀ ଯୁଦ୍ଧ ସଂଘଟିତ ହେଲେ ତାହାର ଭୟାବହ ପରିଣତି କଳ୍ପନାତୀତ । ଏପରି ପରିସ୍ଥିତିରେ ଯଦି ଏ ଯୁଗର ମନୁଷ୍ୟ ଅତ୍ୟନ୍ତ ନିରାଶାବାଦୀ ଭବିଷ୍ୟର ଚିନ୍ତନକ ହୋଇପଡ଼େ । ତେବେ ତାହା ଏକ ସ୍ୱାଭାବିକ ପ୍ରତିକ୍ରିୟା ବୋଲି ମନେହେବ । ବୋଧହୁଏ ସେଥିପାଇଁ ଆଧୁନିକ ସମାଜରେ ରାଶିଫଳ ପ୍ରକାଶ କରିବା ପାଇଁ ସମ୍ବାଦପତ୍ର ଓ ସାମୟିକ ପତ୍ର ଏତେ ବ୍ୟାକୁଳ । ସାହିତ୍ୟରେ ମଧ୍ୟ ପଣ୍ଡିତର ଏହି ରୋଗଗ୍ରସ୍ତ ବୈରାଗ୍ୟ ମନର ଚିତ୍ର ଦେଖିବାକୁ ମିଳେ ।

## ସାହିତ୍ୟ ବଜାରର ବ୍ୟାପକତା ଓ ଉଚ୍ଛୃଙ୍ଖଳତା

ସ୍ୱାଧୀନତା ପରେ ସାହିତ୍ୟର ବଜାର ଯେ ଯଥେଷ୍ଟ ବୃଦ୍ଧି-ଲାଭ କରିଅଛି ଏଥିରେ ସନ୍ଦେହ ନାହିଁ । ପୂର୍ବର ତୁଳନାରେ ବର୍ତ୍ତମାନ ବହୁ ସଂଖ୍ୟାରେ ପୁସ୍ତକ ପ୍ରକାଶିତ ହେଉଅଛି । ସରକାର ମଧ୍ୟ ଦେଶର ବିଭିନ୍ନ ଅଞ୍ଚଳରେ ପ୍ରତିଷ୍ଠିତ ପୁସ୍ତକାଳୟକୁ ପୁସ୍ତକ ଲେଖକର ଯୋଗାଇ ଦିଆଯାଉଛି, ଶିକ୍ଷାର ପ୍ରସାର ଓ ଶିକ୍ଷାନୁଷ୍ଠାନର ବହୁଳ ପ୍ରତିଷ୍ଠା ଫଳରେ ସେହି ଅନୁଷ୍ଠାନ ଗୁଡ଼ିକ

ମଧ୍ୟ ବହୁ ପରି·।ଣରେ ପୁସ୍ତକ କଣୁଅଛନ୍ତି । ଯୋଜନାର କାର୍ଯ୍ୟକାରିତା ଫଳରେ ଜନସାଧାରଣ ମଜୁରୀ ସୂତ୍ରରେ ଯଥେଷ୍ଟ ଅର୍ଥଲାଭ କରୁଅଛନ୍ତି । ତେଣୁ ପୁସ୍ତକ କିଣିବା ପାଇଁ ଅଧିକ ଆଗ୍ରହ ପ୍ରକାଶ ପାଉଅଛନ୍ତି । ମାତ୍ର ଏହା ଫଳରେ ପୁସ୍ତକ ପ୍ରସାରରେ ସଂଖ୍ୟା ଦୃଷ୍ଟିରୁ ହୁଏତ ଆଶାର ସଞ୍ଚାର ହୋଇପାରେ, ମାତ୍ର ଯେଉଁ ରୁଚିର ଓ ପ୍ରକାରର ସାହିତ୍ୟ ସୃଷ୍ଟି ହେଉଛି, ତାହା ଲକ୍ଷ୍ୟ କଲେ ହତାଶ ହେବାକୁ ପଡେ । କୁହାଯାଏ Bad money drives out good money from the market; ତେଣୁ ସ୍ୱାସ୍ଥ୍ୟକର ଉନ୍ନତ ରଚନା ବଦଳରେ ଶସ୍ତା ସହଜ ଯୌନାପରାଧମୂଳକ ରଚନାର ଆମଦାନୀ ଓ ପ୍ରଚ୍ଚର ଅଧିକ ହେଉଅଛି । ନିମ୍ନ ଶ୍ରେଣୀର ଲେଖକଗଣ ଏ ସୁଯୋଗରେ ଯେପରି ଲାଭବାନ ହେଉ ଅଛନ୍ତି, ସରକାରୀ ସୂତ୍ରରେ ହଜାର ହଜାର ଟଙ୍କାର ପୁସ୍ତକ କିଣୁଥିବା ରୁଚିହୀନ, ସରକାରୀ କର୍ମଚାରୀଗଣ ଯେ ଅସାହିତ୍ୟ ପ୍ରସାରରେ ଅଧିକ ସାହାଯ୍ୟ କରିବେ ଏଥିରେ ଦ୍ୱିମତର ଅବକାଶ ନାହିଁ । ତେଣୁ ଏ ସମ୍ବନ୍ଧରେ ଯଥେଷ୍ଟ ସାବଧାନତା ଅବଲମ୍ବନ ନ କଲେ ସାହିତ୍ୟର ସଂସାର ଅତ୍ୟନ୍ତ ଅସ୍ୱାସ୍ଥ୍ୟକର ହୋଇ ପଡ଼ିବ ।

## ସାହିତ୍ୟ ସୃଷ୍ଟିରେ ଯୋଗ୍ୟତାର ମାପକାଠି ନାହିଁ

ଏ ଯୁଗ ହେଲା ବିଶେଷଜ୍ଞଙ୍କର ଯୁଗ । ଆଜି ଜ୍ଞାନର ରାଜ୍ୟ ଏତେ ପ୍ରସାରିତ ଯେ ଜଣେ ଲୋକ ଏକାଧିକ ବିଷୟରେ ଧୁରୀଣ ହେବା ସହଜ ନୁହେଁ । ମାତ୍ର ଜୀବନର ନାନା ବିଭାଗରେ ଆଜି ଯେପରି ବିଶେଷଜ୍ଞଙ୍କର ଆମଦାନୀ ପାଇଁ ଆମେ ସତର୍କ ଦୃଷ୍ଟି ରଖି ଥାଉ, ସାହିତ୍ୟ ସଂସାରରେ ସେ କଥାର ବିଲ୍କୁଲ

କଳ୍ପନାଇଁ । 'ଲେଖି ଲେଖି କରଣ' ହେଲ ନ୍ୟାୟରେ ଯେକୌଣସି ଲୋକ ଯେକୌଣସି ଅବସ୍ଥାରେ ଥାଇ ମଧ୍ୟ ଏକାଧାରରେ ଗାଳ୍ପିକ, ଔପନ୍ୟାସିକ, ପ୍ରାବନ୍ଧିକ, ଶିଳ୍ପୀ, ସଙ୍ଗୀତଜ୍ଞ ହେବାପାଇଁ ଯୋର ଧୃଷ୍ଟି ହସ କରିପାରୁଛି ଏବଂ ସେହିପରି ଲୋକମାନଙ୍କୁ ସମାଜ ଯେପରି ସ୍ୱୀକୃତି ପ୍ରଦାନ କରୁଛି, ଏଥିରେ ବାସ୍ତବିକ ବିଚଳିତ ହେବାର କଥା । ଅଯୋଗ୍ୟ ଲୋକମାନଙ୍କ ହାତରେ ସାହିତ୍ୟ ସୁନ୍ଦରୀ ଆଜି ଅତ୍ୟାଚାରିତା ଓ ଭ୍ରଷ୍ଟା । ହୁଏତ ସେହି ସୁନ୍ଦରୀଙ୍କୁ ଉଦ୍ଧାର କରିବା ପାଇଁ ଆଧୁନିକ ସମାଜ ନିଜକୁ ଅତ୍ୟନ୍ତ ଅସହାୟ ମନେ କରୁଛି । ସାହିତ୍ୟ ଚର୍ଚ୍ଚାର ଉଦ୍ଦେଶ୍ୟ ସତ୍ୟ, ଶିବ ସୁନ୍ଦରର ପ୍ରତିଷ୍ଠାରେ ନିର୍ଦ୍ଦିଷ୍ଟ ନରହି ତାହା ବ୍ୟକ୍ତିଗତ ପ୍ରତିଷ୍ଠା ବା ଅବସର ବିନୋଦନ ପାଇଁ ଉଦ୍ଦିଷ୍ଟ ହୋଇଅଛି । ଏହି ମନୋଭାବକୁ ସମାଲୋଚନା କରି ବଙ୍ଗ ସାହିତ୍ୟର ଅନ୍ୟତମ ପ୍ରବୀଣ ଆଲୋଚକ ମୋହିତଲାଲ ମଜୁମଦାର ତାଙ୍କର 'ସାହିତ୍ୟ ବିଚାର' ପୁସ୍ତକର 'ସମ୍ବାଦ ଓ ସାହିତ୍ୟ ଶୀର୍ଷ'କ ପ୍ରବନ୍ଧରେ ଲେଖିଛନ୍ତି—'ଏ ଜନ୍ୟ ଯିନି Economics Politics ଅର୍ଥ ବ Sociology ର ଚର୍ଚ୍ଚା ବା ଚର୍ବିତଚର୍ବଣ କରିୟା ଥାକେନ ଏବଂ ତାହାଇ ଯାହାର ପେଶା, ତିନି ଓପାୟେର ଉପର ପା ତୁଲିୟା ସାହିତ୍ୟ-ବିଚାର କରିତେ ବସେନ ଏବଂ ଯେହେତୁ ତିନି ଏକଜନ ପି· ଆର· ଏସ ଅଥବା ପି· ଏଚ· ଡି· ଉପାଧିଧାରୀ ଅଧ୍ୟାପକ ବ୍ୟକ୍ତି, । ସେହି ହେତୁ ତାହାର ଅମୂଲ୍ୟ ସାହିତ୍ୟିକ ମତାମତ ସମ୍ବାଦପତ୍ରେ ଆଡ଼ମ୍ବରେ ବିଘୋଷିତ ହଇୟାଥାକେ । ଏକଟା ଫୁଟବଲ ଖେଲାର ସମ୍ବନ୍ଧେ କିଛୁ ଲିଖିତେ ହଇଲେଓ ବିଶେଷଜ୍ଞ ହଓୟା ଚାଇ । କିନ୍ତୁ ଆମାଦେର୍ ଏହି ସାହିତ୍ୟ ସହଜିୟାର ଦେଶେ ସକଲେଇ ନିଜେଇ ନିଜେର ଅଥରିଟି—ଆତ୍ମ ପ୍ରଶସ୍ତିର ଓ Mutual Admiration ଇ

ଏ ରୂପ ସାହିତ୍ୟ ସମାଲୋଚନାର ଅଭିପ୍ରାୟ । ସମ୍ବାଦପତ୍ରରେ ଯାହାକିଛି ସାହିତ୍ୟିକ ସମ୍ବାଦ ବାହାର ହୁଏ, ତାହାର ଅଧିକାଂଶ ଏହି ଜାତୀୟ ।

## ନାଇଲନ ଯୁଗରେ ସାହିତ୍ୟ

ଶରୀରର ଆବରଣ ପାଇଁ ସଭ୍ୟ ମନୁଷ୍ୟ ପରିଚ୍ଛଦର ଉଦ୍ଭାବନ କରିଥିଲା । ଏହି ଆବରଣ ମଧ୍ୟରେ ଦେହର ସୁଖ ହୁଏତ ଥିଲା, ମାତ୍ର ତାର ବନ୍ଦନା ନଥିଲା । କିନ୍ତୁ ନାଇଲନ ଯୁଗରେ ପରିଚ୍ଛଦର ପ୍ରଧାନ ଉଦ୍ଦେଶ୍ୟ ହେଲା ଦେହର ନଗ୍ନ ଓ ଅଶ୍ଳୀଳ ପ୍ରକାଶ । ଦେହର ବନ୍ଦନା ହେଲା ଆଧୁନିକ ଭୋଗସର୍ବସ୍ୱ ସଭ୍ୟତାର ପ୍ରଧାନ ପ୍ରେରଣା । ତେଣୁ ସାହିତ୍ୟରେ ମଧ୍ୟ ସେହିପ୍ରକାର ରୁଚି ପ୍ରତିଫଳିତ । ସାହିତ୍ୟର ପ୍ରଧାନ ଆବେଦନ ହେଉଛି ଚିରନ୍ତନର ପୂଜା, ଆତ୍ମାର ବନ୍ଦନା, ସତ୍ୟ ଓ ଶିବର ଆରାଧନା । ମାତ୍ର ଆଧୁନିକ ସାହିତ୍ୟରେ ଏହି ଚିରନ୍ତନର ବନ୍ଦନା ନାହିଁ । ଆତ୍ମାର ଜୟଜୟକାର ସମ୍ଭବ ନୁହେ । ତେଣୁ ତାହା ଏ ଯୁଗର ଉଚ୍ଛୃଙ୍ଖଳ ମତିହୀନ ମଣିଷର ମନରେ ପବିତ୍ର ନେତୃତ୍ୱ ଦେବା କଳ୍ପନାତୀତ ।

ସାହିତ୍ୟ ଏକ ନିର୍ଦ୍ଦିଷ୍ଟ ଯୁଗର ଚିତ୍ର ପ୍ରଦାନ କରେନାହିଁ । ଭାବାବେଗ ଦୃଷ୍ଟିରୁ ତାହା ସର୍ବକାଳର । ସେହି ଦୃଷ୍ଟିରୁ ସ୍ରଷ୍ଟା ଚିରନ୍ତନ ଆଦର୍ଶ ପ୍ରଚାର ପାଇଁ ସର୍ବଦା ସଚେତନ ଥାଏ । ମାତ୍ର ଆଧୁନିକ ସମାଜର ଲେଖକ ନିକଟରେ ଅତୀତ କିମ୍ବା ଭବିଷ୍ୟତ ବଡ଼ କଥା ନୁହେ । ସେ ହେଉଛି ଏକାନ୍ତ ଭାବରେ ବ୍ୟକ୍ତି-ନିଷ୍ଠ ଏବଂ ବର୍ତ୍ତମାନ-ସର୍ବସ୍ୱ । ଏହି ବର୍ତ୍ତମାନ—ସର୍ବସ୍ୱ ଲେଖକର ଲେଖାରେ ଯୁଗର ଉଚ୍ଛୃଙ୍ଖଳତା, ଦୋଷପୂର୍ଣ୍ଣ ଅଶ୍ଳୀଳ ଏବଂ ପ୍ରମାଦ ପୂର୍ଣ୍ଣ ଅନୁଭୂତି ରୂପାୟିତ ହେବ, ଏଥିରେ ବରଂ ଯୌକ୍ତିକତା

ଅଛି । ତେଣୁ ସେ କପଟ ଜନିତ ରୁଚି ଏବଂ ନୈତିକତାର ଆଦର୍ଶକୁ ରୂପଦେବାକୁ ଅଗ୍ରହଶୀଳ ହେବ, ଯାହାର ମୂଲ୍ୟବୋଧ ଏ ସମାଜରେ ଆଦୌ ନାହିଁ କହିଲେ ଚଳେ ।

## ସାମ୍ବାଦିକତା ଓ ସାହିତ୍ୟ

ଆଧୁନିକ ଜୀବନରେ ସାମ୍ବାଦିକତାର ପ୍ରଭାବ ଅତ୍ୟନ୍ତ ବ୍ୟାପକ ରାଜନୀତି ସମାଜନୀତି ଅଥବା ସାହିତ୍ୟର ବିଭିନ୍ନ କ୍ଷେତ୍ରରେ ସମ୍ବାଦପତ୍ରର ଦାନ ଅପରିସୀମ । ସେଥିପାଇଁ ସମ୍ବାଦପତ୍ରକୁ ରାଷ୍ଟ୍ରର ଚତୁର୍ଥ ଶକ୍ତି ବୋଲି ସ୍ୱୀକାର କରାଯାଉଛି । ସାମ୍ବାଦିକତା ଓ ସାହିତ୍ୟର ମୌଳିକ ଲକ୍ଷ୍ୟ ଭିନ୍ନ । ସାମ୍ବାଦିକତା ସଂପୂର୍ଣ୍ଣ ଭାବରେ ବର୍ତ୍ତମାନ ସର୍ବସ୍ୱ । ଚଳନ୍ତିକାର ବିବରଣୀ ପ୍ରକାଶ କରିବା ହେଲା ସମ୍ବାଦପତ୍ରର ଧର୍ମ । ମାତ୍ର ସାହିତ୍ୟ ଚଳନ୍ତିକାକୁ ଧାରଣ କଲେ ମଧ୍ୟ ତାହାକୁ ଅତିକ୍ରମ କରି ସେ ପ୍ରତିଷ୍ଠିତ ହେବାକୁ ଚାହେଁ । ସାମ୍ବାଦିକତାର ଏହି ଚଳନ୍ତିକା—ଦର୍ଶନ ତାହାର ପରିବେଶକୁ କ୍ଷଣଧର୍ମୀ କରିବାକୁ ବାଧ୍ୟ କରିଅଛି । ଅବଶ୍ୟ ସଂବାଦପତ୍ର ସାହିତ୍ୟବିଭାଗ ମାଧ୍ୟମରେ ଲେଖକ ସୃଷ୍ଟି କରିବାର ମହାନ ଦାୟିତ୍ୱ ନେଇ ଅଛନ୍ତି । ମାତ୍ର ଏହି ସାହିତ୍ୟ କ୍ଷେତ୍ରରେ many are called, but few are chosen" କାରଣ ସମ୍ବାଦ ପତ୍ରର ସ୍ୱଳ୍ପ ପରିସର ମଧ୍ୟରେ ଚିରନ୍ତନ ପ୍ରତିଷ୍ଠାର ଯେତେ ଆବେଗ ଦୃଷ୍ଟିଗୋଚର ହୁଏ ନାହିଁ, ତାଠାରୁ ବହୁ ଗୁଣରେ ପ୍ରକାଶ ପାଏ ସାମୟିକ ଯଶଃ ଓ ଜୀବିକାର ଆକାଂକ୍ଷା । ସାହିତ୍ୟ ବା ସାହିତ୍ୟିକଙ୍କ ସଂପର୍କରେ ସମ୍ବାଦପତ୍ରର ଯେଉଁ ସ୍ୱତନ୍ତ୍ର ସଂଖ୍ୟା ବା ଲେଖା ପ୍ରକାଶପାଏ, ତାହା ବହୁ ସମୟରେ ଆଞ୍ଚଳିକ, ଗୋଷ୍ଠୀଗତ ପ୍ରୀତିରେ ପୂର୍ଣ୍ଣ ଅଥବା ଅତିରିକ୍ତ ବ୍ୟକ୍ତି ପୂଜାଜନିତ ଧାରଣାରେ ନିୟନ୍ତ୍ରିତ । ଏହାଛଡ଼ା ଏ ଯୁଗରେ ଆଉ ଏକ ବଡ଼କଥା ହେଉଛି ସମ୍ବାଦପତ୍ରରେ

ପୁସ୍ତକ ସମାଲୋଚନା । ସେହି "ସାହିତ୍ୟ ବିଗ୍ରହ' ଲେଖକଙ୍କ ଭାଷାରେ ଭଦ୍ରଲୋକ-ଅର ଏକଟି ବଡ଼ କାଜ ହଇୟାଛେ—ପ୍ରାପ୍ତ ପୁସ୍ତକେର ସମାଲୋଚନା, ଏଇ ସକଲରଚନା ଅସାଧ୍ୟ ଏବଂ ବୋଧହୟ ପତ୍ରିକା ସମ୍ପାଦକେର ଓ ତାହା ଅଜ୍ଞାତ ନହେ । ଯେ, ବ୍ୟକ୍ତି ଇହା ଲିଖିଆ ଥାକେନ, ତାହାର ଏକମାତ୍ର ଯୋଗ୍ୟତା ତିନି ବୁକନି-ବିଦ୍ୟା ଆୟତ୍ତ କରିୟାଛେନ, ଲୋକେଇ ବଲେନ ତିନି ବିଶେଷ ପଟୁ ।

## ଦରକାରୀ ସାହିତ୍ୟ

ଦରକାରି ସାହିତ୍ୟ ମଧ୍ୟଯୁଗରେ ରାଜଦରବାରରେ ସାହିତ୍ୟ ପୃଷ୍ଠପୋଷକତା ଲାଭକରୁ ଥିବାରୁ ଅନେକ ସମୟରେ ରାଜା-ମାନଙ୍କର ଜୀବନ କାହାଣୀ ଯେପରି ସାହିତ୍ୟରେ ରୂପାୟିତ, ରାଜା ମାନଙ୍କ ନାମରେ ମଧ୍ୟ ସାହିତ୍ୟ ଭଣିତ । କିନ୍ତୁ ଏ ସ୍ୱାଧୀନ ଗଣତନ୍ତ୍ର ରାଷ୍ଟ୍ରରେ ସାହିତ୍ୟ କ୍ରମଶଃ ଦରବାରୀହେବାକୁ ବସିଛି । ନାନା କ୍ଷେତ୍ରରେ ସରକାରୀ ସମର୍ଥନ ସାହିତ୍ୟର ପ୍ରଚାର ଓ ପ୍ରସାର ପାଇଁ" ଦାୟୀ ହେଉଥିବାରୁ ସାହିତ୍ୟିକ ଯଦି ସରକାରୀ କଳର ସ୍ତାବକ ହୋଇ-ପଡ଼ିବ ଏଥିରେ ବିସ୍ମିତ ହେବାର କିଛି ନାହିଁ । ଏହାଛଡ଼ା ଏ ଉପାଧି ବିତରଣ ଯୁଗରେ ସାହିତ୍ୟିକ ଯଦି ସ୍ୱାଧୀନ ସର୍ଜନା ସ୍ୱପ୍ନକୁ ସଙ୍କୁଚିତ କରି ଦରବାରର ପ୍ରିୟ ହେବାପାଇଁ ଅପେକ୍ଷା ରଖିବ, ତାହାହେଲେ ସାହିତ୍ୟ ସାମାୟିକ ପ୍ରଚାରଧର୍ମୀ ହୋଇ ପଡ଼ିବାର ଆଶଙ୍କା ରହିଛି ।

ମୋଟଉପରେ ଆଧୁନିକ ଯୁଗରେ ସାହିତ୍ୟ ଏକ ମହାନ ସଙ୍କଟର ସମ୍ମୁଖୀନ । ସାହିତ୍ୟ ନିଜେ ଏହି ସଙ୍କଟରୁ ପରିତ୍ରାଣ ନପାଇଲେ ତାହା କେବେହେଲେ ମାନମୟ ଆଦର୍ଶକୁ ପ୍ରତିଷ୍ଠା କରି ପାରିବନାହିଁ । ଫଳରେ ସାହିତ୍ୟ ସାମ୍ପ୍ରତିକ ସଙ୍କଟଜନକ ପୃଥିବୀରେ ନେତୃତ୍ୱ ଦେବା ସମ୍ଭବ ହେବନାହିଁ ।

---

# ଜାତୀୟକବି ଗଙ୍ଗାଧର ମେହେର

କବି ଗଙ୍ଗାଧର ତତ୍କାଳୀନ ସମାଜର ଯେ ଜଣେ ସାର୍ଥକ କବି ଥିଲେ ଏଥିରେ ଦ୍ୱିମତର ଅବକାଶ ନାହିଁ । ମାତ୍ର ତାଙ୍କର ରଚନା ଗୁଡ଼ିକ ସମୟଋଣକୁ ଅତିକ୍ରମ କରି ସର୍ବଯୁଗୀୟ ଭାବନାର ଆଧାର ହୋଇ ପାରିବ କି ନାହିଁ ତାହାହିଁ ଆଜି ବିଚାରିବାର କଥା । ପୁଣ୍ୟାତ୍ମା ନହେଲେ ମୃତ୍ୟୁକୁ କେହି ଅମୃତର ସୋପାନ କରିପାରେ ନାହିଁ । ଗଙ୍ଗାଧର ଏହି ଶ୍ରେଣୀର ସାଧକ, ଯାହାଙ୍କର ମୃତ୍ୟୁର ବହୁବର୍ଷ ପରେ ଶତବାର୍ଷିକ ଜୟନ୍ତୀ ଉତ୍ସବ ଉପଲକ୍ଷେ ସମଗ୍ର ଦେଶରେ ତାଙ୍କର ସାହିତ୍ୟର ମୂଲ୍ୟାଙ୍କନ ପରୀକ୍ଷା ଚାଲିଛି ।

କବି ଗଙ୍ଗାଧର ପରାଧୀନ ଉତ୍କଳରେ ଏକ ବିଜାତୀୟ ଯୁଗରେ ଜନ୍ମଗ୍ରହଣ କରି ଜୀବନ ଅତିବାହିତ କରିଥିଲେ । ଆଜି ଆମର ସୌଭାଗ୍ୟ ଯେ ସ୍ୱାଧୀନ ଉତ୍କଳରେ ସେହି ଜାତୀୟ-କବିଙ୍କର ସ୍ମୃତି ତର୍ପଣ ପାଇଁ ଉଦ୍ୟମ ଚାଲିଅଛି । ଗଙ୍ଗାଧରଙ୍କର ବହୁମୁଖୀ ପ୍ରତିଭାର ଆଲୋଚନା ପାଇଁ ଏହା ଯଥାର୍ଥ କ୍ଷେତ୍ର ନୁହେଁ । ମାତ୍ର ଜାତୀୟକବି ଗଙ୍ଗାଧର କିପରି ଜାତିର ଜୀବନର ଧାରାକୁ ଅଧ୍ୟୟନ କରି ତାହାର ମରମର ବାଣୀ ଅତି ବ୍ୟାକୁଳଭାବରେ ପରିବେଷଣ କରିଥିଲେ, ତାହାହିଁ ଆଜିର ଆଲୋଚ୍ୟ ବିଷୟ । କବି ପଦାନତ ଉତ୍କଳରେ ହୀନମନ୍ୟ ରୋଗଗ୍ରସ୍ତ

ଉତ୍କଳୀୟଙ୍କୁ ସତର୍କ କରି ଦେଇଥିଲେ ଯେ ଜାତିର ବିକାଶ ଓ ସମୃଦ୍ଧି ପ୍ରଧାନତଃ ତାର ଜାତୀୟଭାଷା ଓ ସାହିତ୍ୟର ଶ୍ରୀବୃଦ୍ଧି ଉପରେ ନିର୍ଭର କରେ । ପରମୁଖୀ ଯେଉଁ ଜାତିର ଭବିଷ୍ୟତ ପ୍ରଗତି ସୁଦୂରପରାହତ । ସାଂସ୍କୃତିକ ସଂହତିର ଅଭାବରେ ପୃଥିବୀରେ କୌଣସି ଜାତି ଅଗ୍ରସର ହୋଇଛି ବୋଲି ଇତିହାସ ସାକ୍ଷ୍ୟ ଦିଏନାହିଁ । ଇଂରେଜ ଭାଷା ଓ ସଭ୍ୟତା ପ୍ରତି ଅନୁସରଣ-କାରୀ ତତ୍କାଳୀନ ଶିକ୍ଷିତ ଉତ୍କଳୀୟଙ୍କୁ ସତର୍କ କରି ସେ କହିଥିଲେ ଯେ—

"ମାତୃଭୂମି ମାତୃଭାଷାରେ ମମତା
ଯାହାର ଜନମି ନାହିଁ,
ତାଙ୍କୁ ଯେବେ ଜ୍ଞାନୀ ଗଣରେ ଗଣିବା
ଅଜ୍ଞାନୀ ରହିବେ କାହିଁ ।"
( ମାତୃଭୂମି )

ମାତ୍ର ତାଙ୍କ ଜନ୍ମର ଶହେବର୍ଷ ପରେ ଏ ଅବସ୍ଥାରେ ବିଶେଷ ପରିବର୍ତ୍ତନ ହୋଇଛି ବୋଲି ମନେହୁଏ ନାହିଁ । ଓଡ଼ିଆ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ସହିତ ଓଡ଼ିଆ ସାହିତ୍ୟର ଚର୍ଚ୍ଚା ଯେ ସମଧିକ ପ୍ରସାରିତ ହୋଇଅଛି, ଏଥିରେ ଆଦୌ ସନ୍ଦେହ ନାହିଁ ମାତ୍ର ଶିକ୍ଷିତ ଉତ୍କଳୀୟ ମାନେ ଓଡ଼ିଆଭାଷା ଓ ସାହିତ୍ୟର ଇଜ୍ଜତକୁ ନିଜର ଇଜ୍ଜତ ବୋଲି ଏବେମଧ୍ୟ ମନେ କରିନାହାନ୍ତି । ଏବେ ମଧ୍ୟ ବ୍ୟବହାରିକ ତଥା ସାଂସ୍କୃତିକ ଜୀବନରେ ଓଡ଼ିଆ ଭାଷା ଓ ସାହିତ୍ୟ ଉପଯୁକ୍ତ ମର୍ଯ୍ୟାଦା ଲାଭ କରିପାରି ନାହିଁ । ସବୁଠାରୁ ଅବଶୋଷର କଥା ଯେ ଗଙ୍ଗାଧରଙ୍କ ସମାଜରେ ଓଡ଼ିଆ ଭାଷାର ପ୍ରଧାନ ଶତ୍ରୁ ଥିଲେ ଅଣଓଡ଼ିଆ ପ୍ରବାସୀ । ମାତ୍ର ବର୍ତ୍ତମାନ

ଓଡ଼ିଆ ଭାଷାର ଶତ୍ରୁ ହେଉଛନ୍ତି ଓଡ଼ିଆ ଭାଷା ଭାଷୀ ଉଚ୍ଚ ଶିକ୍ଷିତ, ପଦାର୍ଥ-କାମୀ ଏବଂ ସମାଜପତି ଗଣ । ଓଡ଼ିଆ ଭାଷା ପ୍ରବାସୀ ଚକ୍ରାନ୍ତରେ ଲୋପ ହୋଇ ଯାଉଥିଲା ବେଳେ ରାଧାନାଥ, ଗୌରୀଶଙ୍କର, ଫକୀରମୋହନ, ମଧୁସୂଦନ ଏବଂ ସର୍ବୋପରି ଗଙ୍ଗାଧର ଯେଉଁ ସାଧନା କରିଥିଲେ, ଆଜି ହୁଏତ ସେ କଥା ଅନେକଙ୍କୁ ଅଜ୍ଞାତ । ଓଡ଼ିଆ ଭାଷା ପ୍ରତିଷ୍ଠା ଅର୍ଜନ କରି ଥିବାରୁ ଯେଉଁମାନେ ଆଜି ବିଭିନ୍ନ ଉପାୟରେ ବିଭିନ୍ନ ସ୍ତରରେ ଲାଭବାନ ହୋଇଛନ୍ତି ଏବଂ ଉଚ୍ଚ ସୌଭାଗ୍ୟର ଅଧିକାରୀ ହୋଇ-ଛନ୍ତି, ସେହିମାନେ ଓଡ଼ିଆ ଭାଷା ଓ ସାହିତ୍ୟ ଚର୍ଚ୍ଚା କରିବା ପାଇଁ ସମ୍ମାନବୋଧ କରନ୍ତି ନାହିଁ । ଏ ତ ଗଲା ଓଡ଼ିଆ ସାହିତ୍ୟର କଥା ।

ଗଙ୍ଗାଧର ତତ୍‌କାଳୀନ ଓଡ଼ିଆ ସମାଜକୁ ଯେଉଁ ଦୃଷ୍ଟିରେ ଦେଖିଥିଲେ ତାହା ଆଲୋଚନା କଲେ ଆଧୁନିକ ସମାଜରେ ସେହି ବାଣୀର ଉପଯୋଗିତା ଅକ୍ଷରେ ଅକ୍ଷରେ ଅନୁଭୂତ ହୁଏ । ଗଙ୍ଗାଧର ସାମନ୍ତବାଦୀ ସମାଜରେ ଅବତୀର୍ଣ୍ଣ ହୋଇଥିଲେ । ଜମି-ଦାରୀ ଏବଂ ସୈରେହିତ୍ୟ ପ୍ରଥା ସମାଜକୁ ନାନା ଭାବରେ ନଷ୍ଟଭ୍ରଷ୍ଟ କରି ପକାଉଥିଲା, ସେମାନଙ୍କ ଅତ୍ୟାଚାରରେ ଜନସାଧାରଣ ଅତିଷ୍ଠ ହୋଇ ପଡ଼ିଥିଲେ । ସମାଜରେ ଜାତି ଅଜାତିର ବାଡ଼ବତା ସୃଷ୍ଟି କରି ମୁଷ୍ଟିମେୟ ଲୋକ ଯାବତୀୟ ସୁବିଧା ସୁଯୋଗ ଲାଭ କରୁଥିଲେ ତେଣୁ ସମାଜର ଅଧିକାଂଶ ଦାରିଦ୍ର୍ୟ ଏବଂ ଅଜ୍ଞାନ ଅନ୍ଧକାରେ ମଧ୍ୟରେ ସଡ଼ି ମରୁଥିଲେ । କବି ଗଙ୍ଗାଧର ତାଙ୍କର କବିତାରେ ତତ୍କାଳୀନ ସମାଜର ନାନା ଦୋଷ ଓ ଦୁର୍ବଳତାକୁ ଆଘାତ କରିବା ସଙ୍ଗେ ସଙ୍ଗେ ଏହି ସୁବିଧାବାଦୀ

ଶୋଷକମାନଙ୍କୁ ଧରି ପକାଇ ଦେଇଛନ୍ତି । ବିଶେଷତଃ ତାଙ୍କର "ତାଙ୍କୁ ମଧ୍ୟ ବୋଲଥାନ୍ତି ଧର୍ମ ଅବତାର" କବିତାଟିରେ କବି ସେ କାଳର ଉତ୍ପୀଡ଼କ, ଶୋଷକ ଏବଂ ନ୍ୟସ୍ତସ୍ୱାର୍ଥ ଲୋକମାନଙ୍କୁ ଅତି ତୀବ୍ର ଭାବରେ ସମାଲୋଚନା କରି ସମାଜକୁ ସତର୍କ କରି ଦେଇ ଛନ୍ତି । ସେ ଲେଖିଥିଲେ —

"ମନ ଯାର ବ୍ୟସ୍ତ ସଦା ପରସ୍ୱ ହରଣେ
ଧନ ଯାର ବିଦଳିତ ଗଣିକା ଚରଣେ,
ଜୀବନ ଯା ଲକ୍ଷ ଲକ୍ଷ ଲୋକଙ୍କର ଭାର
ତାଙ୍କୁ ମଧ୍ୟ ବୋଲଥାନ୍ତି ଧର୍ମ ଅବତାର ।"

ଗଙ୍ଗାଧରଙ୍କ ଏହି ଶତବାର୍ଷିକୀ ଅବସରରେ ପ୍ରତ୍ୟେକ ଉତ୍କଳୀୟ ସ୍ୱାଧୀନ ଭାରତର ସାଂପ୍ରତିକ ସମାଜକୁ ଅନୁଧ୍ୟାନ କଲେ ବିଚଳିତ ହେବ । କାରଣ ଗଙ୍ଗାଧରଙ୍କ ଏ ବାଣୀ ଏବେ ମଧ୍ୟ ଅକ୍ଷରେ ଅକ୍ଷରେ ସତ୍ୟ । ସମାଜର ବିଭିନ୍ନ ସ୍ତରରେ ଅତ୍ୟାଚାରୀ ଲମ୍ପଟ ଓ ଅମାନୁଷ ବ୍ୟକ୍ତିମାନେ ପଦାଧିକାରୀ ହୋଇ ଦାରିଦ୍ର୍ୟ ଓ ଅଜ୍ଞାନ ଅନ୍ଧକାର ପ୍ରପୀଡ଼ିତ ଓଡ଼ିଆ ଜାତିକୁ ଉତ୍ପୀଡ଼ନ କରି-ବାରେ ଲାଗିଛନ୍ତି ।

ଯେଉଁ ଦେଶରେ ହାଆନ୍ତ ହାଆନ୍ତ ହୋଇ ଲକ୍ଷ ଲକ୍ଷ ଲୋକ ଜୀବନବ୍ୟାପୀ ଦୁଃଖ ଶୋକରେ ପଡ଼ିଥାନ୍ତି ସାଧାରଣ ଶିକ୍ଷା ଚିକିତ୍ସା ଏବଂ ମାର୍ଜିତ ଜୀବନ ଯାପନ ଯେଉଁମାନଙ୍କ ନିକଟରେ ଏବେ ମଧ୍ୟ ସ୍ୱପ୍ନପ୍ରାୟ, ସେହିମାନଙ୍କର ରାଜସ୍ୱରେ ପ୍ରତିପାଳିତ ଉଚ୍ଚ ସରକାରୀ କର୍ମଚାରୀ ଅତି ଦାୟିତ୍ୱହୀନ ଏବଂ ସ୍ୱାର୍ଥପର ଭାବରେ ଲକ୍ଷ ଲକ୍ଷ ଟଙ୍କା ଗସ୍ତ ଖର୍ଚ୍ଚ ନିଅନ୍ତି ବୋଲି ସାମୟିକ ପ୍ରତିକୂଳ

ସମାଲୋଚନା ଶୁଣାଯାଇ ଥାଏ । ବହୁ ବର୍ଷ ତଳେ ଏହି ଶ୍ରେଣୀର କର୍ମକର୍ତ୍ତା ମାନଙ୍କୁ ଗଙ୍ଗାଧର ଲୋକଙ୍କ ଦୃଷ୍ଟିରେ ଉପହସିତ କରିଥିଲେ । ନିମ୍ନଲିଖିତ ପଦ ଜଣାଏ—

"ଭ୍ରମଣ ଖରଚ ପାଇଁ ପାଇଥାଏ ଭତ୍ତା
ଖାଇଥାଏ ମୋଡ଼ ଏଣେ ଦରିଦ୍ରଙ୍କ ମଥା

କରୁଥାଏ କ୍ଷମତାର ଅପବ୍ୟବହାର
ତାଙ୍କୁ ମଧ୍ୟ ବୋଲୁଥାନ୍ତି ଧର୍ମ ଅବତାର ।"

ଆଧୁନିକ ରାଜନୀତିକ ଜୀବନ ବହୁ ପରିମାଣରେ ଦୂଷିତ ହୋଇଛି ବୋଲି ସର୍ବତ୍ର ଆଲୋଚନା ହେଉଛି । ବହୁ ନିଷ୍ଠାବାନ କର୍ମୀ ଏଥିରେ ବିଚଳିତ ହୋଇ ରାଜନୀତି ପ୍ରତି ବୀତସ୍ପୃହ ହୋଇ ପଡ଼ୁଛନ୍ତି । ଦେଶରେ କ୍ରମଶଃ ନୈରାଶ୍ୟର ବାତାବରଣ ବୃଦ୍ଧିଲାଭ କରୁଛି । ଯୁଦ୍ଧ ପରବର୍ତ୍ତୀ ସମାଜର ପ୍ରତିକ୍ରିୟା ଏବଂ ସ୍ୱାଧୀନତା ପରବର୍ତ୍ତୀ ସୁଯୋଗ ବଳରେ ଅନେକ ଅର୍ଥହୀନ ଲୋକ ଅଳ୍ପ କାଳ ମଧ୍ୟରେ ରାଜନୀତିକ ଜାହାଜର ଆଶ୍ରୟ କରି ଅଭାବନୀୟ ଭାବରେ ବିତ୍ତଶାଳୀ ହୋଇ ପଡ଼ିଛନ୍ତି, ଅଥଚ ସେହିମାନେ ନିଜର ଅର୍ଥନୀତିକ କ୍ଷମତା ବଳରେ ସମାଜର ଉଚ୍ଚସ୍ତରରେ ଅଧିଷ୍ଠିତ ହୋଇ ନୀତି ଓ ସାଧୁତାର ବଖାନ କରିବା ଫଳରେ ସାଧାରଣ ଜୀବନ ଯେ କିପରି ପଙ୍କିଳ ହୋଇ ପଡ଼ୁଛି, ତାହା ସହଜରେ ଅନୁମେୟ । ଗଙ୍ଗାଧରଙ୍କ ଅବସ୍ଥାନ କାଳରେ ମଧ୍ୟ ସମାଜରେ ଏପରି ଶୋଷକ ଏବଂ ପ୍ରବଞ୍ଚକ ରହିଥିଲେ । ସେମାନେ ମଧ୍ୟ ଏହିପରି ଜନସମାଜକୁ ନାନା ଭାବରେ ପ୍ରତାରିତ କରିଥିଲେ । ସେହିମାନଙ୍କୁ କଟାକ୍ଷ କରି ଗଙ୍ଗାଧର ଲେଖିଥିଲେ—

'ବଳ୍ପଗାଁ ତ ହୋଇଥାଏ
ଘରୁ ଶୂନ୍ୟ କରେ
ଶଗଡ ଶଗଡ଼ ଦ୍ରବ୍ୟ
ଆଣି ଘରେ ଭରେ
ସେସବୁ ଦ୍ରବ୍ୟମାନ ପୁଣି
ଦେଖାଏ ବଜାର
ତାକୁ ମଧ୍ୟ ବୋଲିଥାନ୍ତି
ଧର୍ମ ଅବତାର ।'

ଆଧୁନିକ ସମାଜର ପାଠକ ଭାବରେ ବେଳେବେଳେ ମନ ହୁଏ ଏବେ ମଧ୍ୟ କଣ ଗଙ୍ଗାଧର ଆମ ମଧ୍ୟରେ ଥାଆନ୍ତେ କି ? ଜାତିର ଏ ଦୁଃଖ ଏବଂ ଅଭାବକୁ ଏପରି ପ୍ରାଞ୍ଜଳ ଭାବରେ କିଏ ଉପସ୍ଥାପନ କରି ପାରିବ ।

ତେବେ ଗଙ୍ଗାଧର ନୈରାଶ୍ୟବାଦୀ ନ ଥିଲେ । ଅନେକାଂଶ ପରି ସେତେବେଳେ ମଧ୍ୟ ଓଡ଼ିଆ ଭାଷା ଓ ସାହିତ୍ୟର ଶତ୍ରୁ ଥିଲେ । ସମାଜରେ ଜାତିଆଣିର ପ୍ରାଦୁର୍ଭାବ ଥିଲା । ଅସମାନ୍ତର ସମାଜରେ ଜୀବନର ମୂଲ୍ୟବୋଧ ଧନର ପରିମାପ ବଳରେହିଁ ନିର୍ଣ୍ଣୀତ ହେଉଥିଲା । ଅନୀତି ପରାୟଣ ଶାସକ ସମାଜର ଅଷ୍ଟଗ୍ରହ ଭଳି ବିଚରଣ କରି ନାନା ଅଶାନ୍ତିର କାରଣ ହୋଇଥିଲେ । ମାତ୍ର ଏ କଳଙ୍କ କାଳିମାର ବିରୁଦ୍ଧରେ ଦଣ୍ଡାୟମାନହୋଇ ଜାତୀୟ ଚରିତ୍ରର ଶୁଦ୍ଧି କରିବା ସଙ୍ଗେ ସଙ୍ଗେ ସମାଜର ଉନ୍ନତିରେ କାରଣ ହେବାପାଇଁ ସେ ଆହ୍ୱାନ ଜଣାଇଥିଲେ । ସେ ଥିଲେ ଜଣେ କର୍ମଯୋଗୀ । ତାଙ୍କର ଉଜ୍ଜ୍ୱଳ ନିଷ୍ଠା ଓ ସାଧନାର ତୁଳନା ନ ଥିଲା । ତେଣୁ ଯେଉଁ ସମୟରେ ଭାରତୀୟ ସମାଜରେ ପାଶ୍ଚାତ୍ୟ

ଶିକ୍ଷା ଓ ସଭ୍ୟତା ବଳରେ ନାନା ପ୍ରଗତି ସମ୍ଭବ ହେଉଥିଲା, ସେତେବେଳେ ଉତ୍କଳ ବହୁ ଭାବରେ ପଛରେ ପଡ଼ିଥିଲା । ଏହି ହୀନମାନ୍ୟତା ଦୂରକରି ଜାତିର ପ୍ରାଣରେ ସାହସ ଓ କର୍ମନିଷ୍ଠା ଜାଗ୍ରତ କରିବା ପାଇଁ କବି ଲେଖିଥିଲେ—

‘କରମ ନିମନ୍ତେ ନାହିଁ ବଂଶ ପ୍ରୟୋଜନ,
ନୀଚ ହୋଇ କରେ ଯେବେ ଉତ୍ତମ କରମ
ତା ଚରଣେ ଉଚ୍ଚ ସେବେ ସଂସାର ଧରମ ।’

ଅଧୁନିକ ଓଡ଼ିଆ ସମାଜର ସବୁଠାରୁ ବଡ଼ ଦୁର୍ବଳତା ହେଉଛି ହୀନମନ୍ୟତା । ବହୁକାଳରୁ ଅବହେଳିତ ଦାରିଦ୍ର୍ୟ କଣ୍ଟକିତ ଓଡ଼ିଆ ପ୍ରାଣ ଯେ ନିସ୍ତେଜ ଏବଂ ନିରୁତ୍ସାହିତ ହୋଇ-ପଡ଼ିବ, ଏଥିରେ ଆଦୌ ସନ୍ଦେହ ନାହିଁ । ଗଙ୍ଗାଧରଙ୍କ ସମୟରେ ଉତ୍କଳୀୟ ସମାଜର ଅବସ୍ଥା ଅତ୍ୟନ୍ତ ଉତ୍କଟ ଧରଣର ଥିଲା କର୍ମଯୋଗୀ ନ ହେଲେ ଜାତିର ବିକାଶ ଅସମ୍ଭବ । ବର୍ତ୍ତମାନ ହେଉଛି ପ୍ରତିଯୋଗିତାର ଯୁଗ । ଏ ଯୁଗରେ ପାଦକୁ ପାଦ ମିଳାଇ ଅଗ୍ରସର ନ ହେଲେ ଜାତି ପଛକୁ ପଡ଼ିଯିବ । କଥାରେ କହନ୍ତି ‘ଖୋଜିଛି ପୁଅର ଭାଗ ନାହିଁ । ସ୍ୱାଧୀନ ଭାରତରେ ପଞ୍ଚବାର୍ଷିକ ଯୋଜନା ବେ ପ୍ରଗତିର ଏକ ଦୌଡ଼ ଚାଲିଅଛି । ଏ ଦୌଡ଼ରେ ସମକକ୍ଷ ହୋଇ ଅଗ୍ରସର ନ ହେଲେ ଓଡ଼ିଆ ଜାତି ପଛରେ ପଡ଼ିଯିବ । ଆଜକୁ ବହୁ ବର୍ଷ ତଳେ ଗଙ୍ଗାଧର ତତ୍‌କାଳୀନ ସମାଜକୁ ଯେଉଁ ଭାଷାରେ ଉଦ୍‌ବୋଧନ ଦେଇଥିଲେ, ଆଜି ସେହି ବାଣୀର ମୂଲ୍ୟବୋଧ ଅତ୍ୟନ୍ତ ବ୍ୟାପକ ଭାବରେ ଅନୁଭୂତ ହେଉଛି ବୋଲି ଜଣାଯାଏ । ସେ ଆହ୍ୱାନ ଜଣାଇ କହିଥିଲେ —

'ଚୌଦିଗେ ଶୁଭୁଛି ଉଠ ଜାଗଜାଗ
ଅଣ୍ଡା ଉଡ଼ ନିଜ ଧର୍ମେ ଲାଗ ଲାଗ
ଧର୍ମ ବାଷ୍ପରଥ ଧାଇଁ ଶଙ୍ଖ ସ୍ୱନେ
ଆସି ଏବେ ଲାଗି ଗଲାଣି ଷ୍ଟେସନେ
ଚଢ଼ିବା ସମୟ ହେଲାଣି ନିକଟ
ଶୋଇ ପଡ଼ିଅଛ ନ କରି ଟିକଟ ।'

× × ×

'ଗୃହେ ଥିବ ଯେବେ ଦୁଃଖେ ହୋଇ କାବା
ବୃକ୍ଷତଳେ ଶୋଇ ମରୁଥିବ ବାବା
ଉଚ୍ଚ ହେବା ପାଇଁ କର ଯେବେ ଆଶା
ଉଚ୍ଚ କର ଆଗେ ନିଜ ମାତୃଭାଷା ।'

( ଉଦ୍‌ବୋଧନ )

ଭାରତୀ-ଭକତ ଗଙ୍ଗାଧର ଓଡ଼ିଆ ସାହିତ୍ୟରେ ଅକ୍ଷୟ ଯଶର ଅଧିକାରୀ । ଯୁଗ ଯୁଗ ପାଇଁ ତାଙ୍କର କଳ୍ପନାବିଳାସ ଓ ଶାନ୍ତିମୟୀ-ବାଣୀ ଓଡ଼ିଆ ପାଠକ ଓ ସମାଜ ପ୍ରାଣରେ ଅପୂର୍ବ ପ୍ରେରଣା ଓ ସାନ୍ତ୍ୱନା ବିତରଣ କରୁଥିବ । ଯୁଗର କବି ହୋଇ ମଧ୍ୟ ସେ ସର୍ବଯୁଗସ୍ପର୍ଶୀ ସାହିତ୍ୟର ବାର୍ତ୍ତାବହ ହୋଇ ଅଛନ୍ତି । ତାଙ୍କର କାବ୍ୟ କବିତାରେ ଜାତିର ପ୍ରାଣର ବ୍ୟାକୁଳତା ଅତି ପ୍ରାଞ୍ଜଳ ଓ କରୁଣ ଭାବରେ ଝଙ୍କୃତ ହୋଇଅଛି । ସେଥିପାଇଁ ଗଙ୍ଗାଧର ପାଠକ ସମାଜରେ ଏତେ ଆଦରଣୀୟ ଏବଂ ନମସ୍ୟ । ଏଣୁ ନନ୍ଦକିଶୋରଙ୍କ ଭାଷାରେ କବିଙ୍କୁ ଶ୍ରଦ୍ଧାଞ୍ଜଳି ଦେବାକୁ ଇଚ୍ଛା ହୁଏ—

କିନ୍ତୁ 'ତୁମ୍ଭେ ମାନକବି ରହିବ ଜୀବିତ
ଯେତେ ଦିନ ଜଗତେ ଥିବ,
ଓଡ଼ିଆ ସାହିତ୍ୟ ।'

———

# ପଲ୍ଲୀକବି ନନ୍ଦକିଶୋର

ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଗଭୀର ପ୍ରେମ ଅଥବା ଭକ୍ତିର ଉଚ୍ଛଳ ପ୍ରବାହ ବହୁଦିନ ଧରି ଚାଲିଆସିଛି । ଇଂରେଜମାନେ ଏ ଦେଶକୁ ଆସିବା ପରେ ଏବଂ ଇଂରାଜୀ ସାହିତ୍ୟ ବାଟ ଦେଇ ବିଶ୍ୱ-ସାହିତ୍ୟର ସ୍ୱାଦ ଉପଭୋଗ କଲା ପରେ ପ୍ରତ୍ୟେକ ପ୍ରାନ୍ତୀୟ ସାହିତ୍ୟ ପରି ଓଡ଼ିଆ ସାହିତ୍ୟରେ ମଧ୍ୟ ଆଧୁନିକ ଯୁଗର ଆରମ୍ଭ ହୋଇଛି । ରାଧାନାଥ, ମଧୁସୂଦନ, ଫକୀର ମୋହନ ପ୍ରଭୃତି ଏହି ନବଯୁଗର ନିର୍ଦ୍ଦେଶ ଦିଅନ୍ତି । କିନ୍ତୁ ଦେଖିବାର କଥା ଯେ ଏମାନଙ୍କ ଅବ୍ୟବହିତ ପୂର୍ବରୁ ଓଡ଼ିଆ ସାହିତ୍ୟରେ ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ, ବଳଦେବ, ଗୋପାଳକୃଷ୍ଣ ପ୍ରଭୃତିଙ୍କ ମହିମାମୟ ରସାଳପ୍ରେମ ମୂଳକ ରଚନା ବିଶେଷଭାବରେ ପରିବେଷିତ ହୋଇଥିଲା । ନବଯୁଗର ଉନ୍ମେଷ ଆଣିବାରେ ରାଧାନାଥ ମଧୁସୂଦନ ପ୍ରଭୃତି ପୁରୋଧା ହେଲେ । ମତ୍ତ ପ୍ରେମର ଏହି ରସାଳ ଚିତ୍ର ରାଜାରାଣୀଙ୍କର ଜୀବନ ସମ୍ଭୋଗ, ସାମନ୍ତବାଦୀ ପରିବାରର ନିଖୁଣ ଜୀବନ ଚିତ୍ର ରାଧାନାଥ ଛାଡ଼ିପାରିଲେ ନାହିଁ । ତାଙ୍କର କାବ୍ୟକବିତା ମଧ୍ୟରେ ଏ ଯୁଗର ଅଭିବ୍ୟକ୍ତି ଯଥେଷ୍ଟ ଥିଲେହେଁ ଯୁଗର ଜୀବନ ତାଙ୍କୁ ସ୍ପର୍ଶ କରିପାରିଲା ନାହିଁ । ଯୁଗର ବାତାବରଣ ମଧ୍ୟରେ ସେ ଚିନ୍ମୟ ରହି ପ୍ରାଚୀନ ପରମ୍ପରାର ରାଜାରାଣୀଙ୍କୁ ନେଇ କାବ୍ୟ ରଚନା କରିଗଲେ ।

କି ଏ ଜାଣିଥିଲା, କେତେକାଳ ଏହିପରି ଆଉ ଯାଉଥାନ୍ତା । ମାଟିର ମଣିଷ, ପଲ୍ଲୀ ସଂସାରର ଅନୁଭୂତି, ଯାହା ବହୁ ଲୋକର ଅନୁଭୂତି ମଧ୍ୟରେ ରୂପାୟିତ ହୁଏ, ସେ ସବୁ ସାହିତ୍ୟରେ କେବେ ରୂପ ପାଇଥାଆନ୍ତା ।

ସୁଖର କଥା, ଏକ ବୈପ୍ଳବିକ ଯୁଗର ବାର୍ତ୍ତାବହ ରୂପେ ଏତିକିବେଳେ ଦେଖା ଦେଇଥିଲେ ଫକୀର ମୋହନ ଓ ପଲ୍ଲୀକବି ନନ୍ଦକିଶୋର ବଳ । ସାହିତ୍ୟ କ୍ଷେତ୍ରରେ ଏ ଦୁଇଜଣଙ୍କର ଆବିର୍ଭାବ ଯୋଗରୁ ଦୁଇଟି ଅଭାବନୀୟ ଲକ୍ଷ୍ୟର ପୂରଣ ପାଇଁ ଉଦ୍ଦିଷ୍ଟ ହୋଇଥିଲା ।

ପ୍ରାଚୀନ ସାହିତ୍ୟ ପଦ୍ୟବହୁଳ। ମାତ୍ର ସାହିତ୍ୟରେ ସାଧାରଣ ମଣିଷର ଜୀବନଚିତ୍ର ଯେତିକି ପରିମାଣରେ ରୂପରେଖ ନେଉଛି ସାଧାରଣ ସମାଜର ହସ କାନ୍ଦ, ଅଭାବ ଅନୁଭୂତି ଯେଉଁଳି ଭାବରେ ସାହିତ୍ୟରେ ଅଭିବ୍ୟକ୍ତ ହେଉଛି, ସାହିତ୍ୟ ସେତିକି ଗଦ୍ୟବହୁଳ ହୋଇପଡ଼ୁଛି । ଏଣୁ ଆଧୁନିକ ଯୁଗର ସାହିତ୍ୟ ଗଦ୍ୟପ୍ରଧାନ । ଭଞ୍ଜୀୟ ଭାବଧାରାର ଗତିପଥରେ ଏକ ବୈପ୍ଳବିକ ପରିବର୍ତ୍ତନ କରି ରାଧାନାଥ ସାହିତ୍ୟକୁ ଅନ୍ୟ ରୂପ ଦେଲେହେଁ କାବ୍ୟ କବିତାହିଁ ତାଙ୍କ ସୃଷ୍ଟିର ପ୍ରଧାନ ପ୍ରକାଶ ହୋଇ ରହିଥିଲା । ମଧୁସୂଦନ ବ୍ରହ୍ମବାଦ ମଧ୍ୟରେ ନିଜକୁ ହଜାଇ ରଖି ମଣିଷ ପ୍ରକୃତିକୁ ଅନୁଧ୍ୟାନ କରିବାକୁ ଆଗ୍ରହ ଦେଖାଇ ନ ଥିଲେ । ପୁଣି ସଂସ୍କୃତ ସାହିତ୍ୟର ନିବିଡ଼ ପ୍ରଭାବ ଫଳରେ ତାଙ୍କର ଗଦ୍ୟଶୈଳୀ କ୍ଲିଷ୍ଟ ହୋଇ ପଡ଼ିଥିଲା । ପଲ୍ଲୀର ଭାଷାରେ ପଲ୍ଲୀର ଅଭାବ ଅନୁଭୂତି, ସୁଖ, ଦୁଃଖ, ହର୍ଷ, ବିଷାଦ ଜୀବନ ଚିତ୍ରର ରୂପ ଫକୀରମୋହନ ଯେପରିକି ଗଦ୍ୟ ସାହିତ୍ୟରେ ଫୁଟାଇବାର

ଭାର ନେଲେ, ସେହିପରି ଏ ଯୁଗର ଅନ୍ୟତମ ଧ୍ୱନିଷ୍ଠ ରଚନା ଲିରିକ୍ ଅଥବା ଗୀତି କବିତା ମାଧ୍ୟମରେ ପଲ୍ଲୀଜୀବନର ଚିତ୍ର ଦେଲେ ନନ୍ଦକିଶୋର ।

କଟକ ଜିଲ୍ଲାର ସାଲେପୁର ଥାନାର କୁଶୁପୁର ଗାଁ ନିକଟରେ ବହିଯାଉଛି ବିରୁପା ନଈ କୁଳୁ କୁଳୁ ହୋଇ । କେତେ ଯୁଗର କଥା କହି ସେ ବହୁଛି କେଉଁ କାଳରୁ । ତାହାର ଅଦୂରରେ ଅଳତିଗିରି ଓ ଉଦୟଗିରି ପ୍ରକୃତିରାଣୀର ବିଚିତ୍ର ରୂପସମ୍ଭାର ମଧ୍ୟରେ ଐତିହାସିକ ସ୍ମୃତି ବହି ଉନ୍ନତ ଶିରରେ ଦଣ୍ଡାୟମାନ ।

ଏହିଭଳି ଏକ ପଲ୍ଲୀକୋଳରେ ଆଜକୁ ପଞ୍ଚସ୍ତରି ବର୍ଷ ତଳେ ଡ଼ିସେମ୍ବର ବାଇଶି ତାରିଖରେ ପଲ୍ଲୀକବି ନନ୍ଦକିଶୋର ଜନ୍ମଗ୍ରହଣ କରିଥିଲେ ।

ଆଜିକାଲି ପରି ସେତେବେଳେ ଇଂରେଜୀ ଶିକ୍ଷାର ପ୍ରଚଳନ ପାଇଁ ଏତେ ସ୍କୁଲ୍ କଲେଜ ବସି ନ ଥିଲା । ମାଟିବଂଶ ଅବଧାନଙ୍କ ପାଠଶାଳାରେ କୋଇଲି, ଗୋପୀଭାଷା, ମାନସାଙ୍କ, ଓଡ଼ାଙ୍କ, ଚଣିକିଆ, ବିଚିତ୍ର ରାମାୟଣ, ମଥୁରାମଙ୍ଗଳ, ଭାଗବତ, ଲାବଣ୍ୟବତୀ ବୈଦେହୀଶ ବିଳାସ ପ୍ରଭୃତିଠାରୁ ଆରମ୍ଭକରି ବ୍ୟାକରଣ, ଲିଖନ ପଦ୍ଧତି ସମସ୍ତ କିଛି ଗାଁ ପିଲାଏ ପଢ଼ୁଥିଲେ । ନନ୍ଦକିଶୋର ଚାଟଶାଳୀ ପାଠ ଶେଷ କରି ଅନୁସନ୍ଧାନ ପାଇଁ ଜମିଦାରୀ କଚେରୀରେ ତାଲିମ ହେଲେ । ଯୁଗଶିଳ୍ପୀ ଫକୀରମୋହନଙ୍କୁ ନିମକମହାଲରେ ବାନ୍ଧିଦେବାର ପ୍ରୟାସ ବିଧି ଯେପରି ସଫଳ ନ ଥିଲା, ଓଡ଼ିଆ ସାହିତ୍ୟର ଅନ୍ୟତମ ଶ୍ରେଷ୍ଠ ରୂପକାର ନନ୍ଦକିଶୋର ସିରସ୍ତା କାମରେ ଆବଦ୍ଧ ହେବା ସେହିପରି ବିଧିବିଡ଼ମ୍ବନା ଥିଲା ।

ସୁଯୋଗକ୍ରମେ ତାଙ୍କ ଗାଁରେ ଉଚ୍ଚ ପ୍ରାଥମିକ ସ୍କୁଲ ପ୍ରତିଷ୍ଠିତ ହୁଏ ଏବଂ ନନ୍ଦକିଶୋର ପୁନର୍ବାର ଛାତ୍ର ଜୀବନ ବରଣ କରନ୍ତି । କ୍ରମେ କ୍ରମେ ସେ ଉଚ୍ଚ ପ୍ରାଥମିକ ବୃତ୍ତି, ମାଇନର ବୃତ୍ତି, ପାଇ ପରିଶେଷରେ କଲେଜର ଉପାଧି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ-ଥିଲେ । ଟାଉନ ସ୍କୁଲରେ ସ୍ୱର୍ଗତ ବିଶ୍ୱନାଥ କରଙ୍କ ପ୍ରଧାନ ଶିକ୍ଷକ ଏବଂ କଲିଜିଏଟ ସ୍କୁଲରେ ଭକ୍ତକବି ମଧୁସୂଦନଙ୍କୁ ଶିକ୍ଷକରୂପେ ପାଇବା ତାଙ୍କ ଜୀବନର ଏକ ବିଶିଷ୍ଟ ଘଟଣା । ଏହି ଦୁଇ ପ୍ରଧାନ ପୁରୁଷଙ୍କ ସାନ୍ନିଧ୍ୟ ଲାଭ କରିବା ଫଳରେ ନନ୍ଦକିଶୋରଙ୍କ ଜୀବନ ବିକଶିତ ହେବାପାଇଁ ଯଥେଷ୍ଟ ପ୍ରେରଣା ପାଇଥିଲା । ତାଙ୍କର କଲେଜ ଜୀବନରେ ନବପ୍ରକାଶିତ 'ଉତ୍କଳ ସାହିତ୍ୟ'ରେ ନିଜକୁ ତରୁଣ ଲେଖକ ଭାବରେ ସେ ପ୍ରତିଷ୍ଠିତ କରିପାରିଥିଲେ । ଶେଷ ଜୀବନ ପର୍ଯ୍ୟନ୍ତ ସେ ଶିକ୍ଷା ବିଭାଗରେ ନିଜର ଜୀବନକୁ ନିୟନ୍ତ୍ରଣ କରିଥିଲେ । କଟକ ଟାଉନ-ସ୍କୁଲରେ ସାମାନ୍ୟ ବେତନରେ ଶିକ୍ଷକତାଠାରୁ ଆରମ୍ଭ କରି ସମ୍ବଲପୁର, ବାଲେଶ୍ୱର ତଥା ଟ୍ରେନିଂ କଲେଜରେ ଏହି କାର୍ଯ୍ୟରେ ସେ ନିଯୁକ୍ତ ହୋଇଥିଲେ । କଟକ ଓ ପୁରୀଜିଲ୍ଲାର ପରିଦର୍ଶକ କର୍ମଚାରୀ ହେବାଠାରୁ ଆରମ୍ଭ କରି ସମଗ୍ର ଓଡ଼ିଆ ସ୍କୁଲ ସମୂହର ସହକାରୀ ପରିଦର୍ଶକ ହୋଇଥିଲେ । ୧୯୨୭ ମସିହାରେ ସେ ଅବସର ଗ୍ରହଣ କରିଥିଲେ ।

ସେ ଯୁଗର ସ୍ରଷ୍ଟା ରାଧାନାଥ, ମଧୁସୂଦନ ଓ ଫକୀର ମୋହନ ଜୀବନର କର୍ମଜଞ୍ଜାଳରେ ରହି ଓଡ଼ିଶାର ବିଭିନ୍ନ ଅଞ୍ଚଳ ସହିତ ପ୍ରତ୍ୟକ୍ଷ ସମ୍ପର୍କରେ ଆସିବାର ଯେପରି ସୁଯୋଗ ପାଇଥିଲେ, ନନ୍ଦ-କିଶୋରଙ୍କ ଭାଗ୍ୟରେ ମଧ୍ୟ ତାହାହିଁ ଘଟିଥିଲା । ଫକୀରମୋହନଙ୍କ

ପରି ସୁନ୍ଦର ପଲ୍ଲୀକୋଳରୁ ଆସି ସୁନ୍ଦର ପଲ୍ଲୀର ପ୍ରଶାନ୍ତ ଜୀବନକୁ ସାହିତ୍ୟରେ ପ୍ରାଣବନ୍ତ କରିବାରେ ସେ ଫକୀରମୋହନଙ୍କ ପରି ପାରଗ ହୋଇଥିଲେ ।

ମାତ୍ର ଦୁଃଖର କଥା ଯେ, ନିରବଚ୍ଛିନ୍ନ ସାହିତ୍ୟ ସାଧନା ତାଙ୍କ ଜୀବନରେ ସମ୍ଭବ ହୋଇ ନ ଥିଲା । ଜୀବନର ପ୍ରଥମ କାଳରେ ତାଙ୍କର କତିପୟ ରଚନା ଗୁଡ଼ିକ ପ୍ରକାଶିତ ହୋଇଥିଲା । ସଂସାରର କର୍ମଜଞ୍ଜାଳରେ ପଡ଼ି ସେ ଏ ମହତ କାର୍ଯ୍ୟରୁ ବିରତ ହୋଇଥିଲେ । ଦୁର୍ଭାଗ୍ୟର କଥା ଯେ ପଲ୍ଲୀକବି ପରିଣତ ଜୀବନରେ ଅନ୍ଧହୋଇ ଯାଇଥିଲେ ଏବଂ ଜୀବନରେ ତାଙ୍କର ଏଭଳି ଦୁର୍ଘଟଣା ପାଇଁ ସେ ବହୁ ଅନୁତାପ କରିଥିଲେ । ଏହି ଅନ୍ଧ ଜୀବନରେ ସେ ବହୁ କବିତା ଡାକଦେଇ ଅଛନ୍ତି । କାନ୍ତକବି ଲକ୍ଷ୍ମୀକାନ୍ତ ଯେପରି ନିଜର ଅକ୍ଷମତା ପାଇଁ ଅଭିମାନ କରି ପରମପିତାଙ୍କ ନିକଟରେ ଅଭିଯୋଗ କରିଛନ୍ତି—

"ସବୁଥିରୁ ବଞ୍ଚିତ କରି କେଉଁ ଯନ୍ତ୍ରଣା ଭୁଞ୍ଜାଇବ ହେ" ସେହିପରି ପଲ୍ଲୀକବି ତାଙ୍କର 'ଗୀତ' ଶୀର୍ଷକ କବିତାରେ ନିଜ ଅବହେଳା ଜନିତ ଏକ କୈଫିୟତ ଦେଇଛନ୍ତି । ପରିଣତ ଜୀବନରେ ସେ ଆଉ କବିତା ଲେଖିପାରି ନାହାନ୍ତି । କବିତା ସ୍ୱତଃସ୍ଫୂର୍ତ୍ତ । ଏହା ଅନ୍ତରର ଆହ୍ୱାନ ମନ୍ତ୍ର । ଏହି ଚିରନ୍ତନ ଆହ୍ୱାନକୁ ଏଡ଼ି ସେ ସଂସାର ଜଞ୍ଜାଳ ମଧ୍ୟରେ ବୁଡ଼ିଗଲେ, ଏହାହିଁ ଆଶ୍ଚର୍ଯ୍ୟର କଥା । ସେ ଦୁଃଖ କରି କହିଛନ୍ତି—

"ବାଣୀ ଆରାଧନା ତେଜି ସେବିଲି ସଂସାର
ମନା ହୋଇଗଲା ମୋତେ ଶ୍ରୀ କୋଠ-ଭଣ୍ଡାର ।
କବିତା ଲେଖିଲେ ସିନା କାନ୍ତ ଅନ୍ତର
ନୋହିଲେ କି ହେବ ଯୋଗ ବେଦ ମାତର ।"

ସମସାମୟିକ ପତ୍ର ପତ୍ରିକାରେ ତାଙ୍କ କବିତାର କଠୋର ସମାଲୋଚନା ହୋଇଥିବା ସନ୍ଦେହ ନାହିଁ । ତାଙ୍କର 'ଗ୍ରନ୍ଥକାର ଓ ସମାଲୋଚକ' କବିତା ସେହିଭଳି ମନୋଭାବ ପରିଚୟ ଦେଉଅଛି । ଲେଖକର ସାଧନା, ପରିଶ୍ରମ ପ୍ରଭୃତି କିଛି ନ ବୁଝିଥିବା ପଲ୍ଲବଗ୍ରାହୀ ସମାଲୋଚକମାନଙ୍କୁ ସେ ଆକ୍ଷେପ କରିଛନ୍ତି ଏବଂ ଲେଖକର ସମସ୍ତ ପୁସ୍ତକ ଅଧ୍ୟୟନ ନ କରି ଖାଲି ସମାଲୋଚନା ପୂର୍ବକ ମତବ୍ୟକ୍ତ ନ କରିବାକୁ ସେ ଅନୁରୋଧ କରିଛନ୍ତି । ଏଣୁ ସନ୍ଦେହ ଏ, ବିରୂପ ସମାଲୋଚନା ପାଇଁ ସେ ହତୋତ୍ସାହ ହୋଇ ନିରବଚ୍ଛିନ୍ନ ସାହିତ୍ୟ ସେବା କରି ପାରିନାହାନ୍ତି, ଅଥବା ଜଞ୍ଜାଳର ଆକର୍ଷଣ ସେ ଏଡ଼ିପାରି ନାହାନ୍ତି ।

ଫକୀର ମୋହନଙ୍କ ପରି ନନ୍ଦକିଶୋର ପଲ୍ଲୀର ଜୀବନକୁ ଅତି ନିବିଡ଼ ଭାବରେ ଅନୁଧ୍ୟାନ କରିଥିଲେ । ସାହିତ୍ୟର ପ୍ରତ୍ୟେକ ବିଭାଗରେ ଲେଖନୀ ଚାଳନା କରିଥିଲେହେଁ ତାଙ୍କର ପ୍ରତିଭାର ସ୍ପଷ୍ଟ ବିକାଶ କେବଳ ପଲ୍ଲୀ କବିତା ଗୁଡ଼ିକରୁ ଆସେ ନାହିଁ । ସାହିତ୍ୟରେ ପଲ୍ଲୀର ଜୀବନ ଚିତ୍ରଣରେ ବସି ସେ ଅମର ହୋଇଛନ୍ତି ସେ କାବ୍ୟ ଲେଖିଛନ୍ତି, ଉପନ୍ୟାସ ଲେଖିଛନ୍ତି, କ୍ଷୁଦ୍ର ଗଳ୍ପ, ପ୍ରବନ୍ଧ, ଖଣ୍ଡକବିତା ପ୍ରଭୃତି ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରିଛନ୍ତି । ପ୍ରଥମ ଜୀବନରେ ରାଧାନାଥ ଏବଂ ମଧୁସୂଦନଙ୍କ ଲିଖନ ଶୈଳୀକୁ ସେ ନିବିଡ଼ ଭାବରେ ଅନୁସରଣ କରିଛନ୍ତି । ଏଥିରେ ତାଙ୍କର ବ୍ୟକ୍ତିତ୍ୱର ବିକାଶ ହୋଇନାହିଁ । କେବଳ ତାହା ଗତାନୁଗତିକ ଭାବଧାରାର ରୂପାନ୍ତର ପରି ମନେ ହୋଇଅଛି । ଏହି ଭାବରେ ତାଙ୍କର ଭକ୍ତି ପ୍ରେମ ଅଥବା ପ୍ରକୃତି ବର୍ଣ୍ଣନାମୂଳକ କବିତା ଓ କାବ୍ୟଗୁଡ଼ିକରେ ସେହି ରାଧାନାଥ ଅଥବା ମଧୁସୂଦନ

କୁହଁ ଆମେ ଦେଖିଥାଉଁ । ମାତ୍ର ଯେଉଁଠାରେ ପଲ୍ଲୀର ଦ୍ୱାରଦେଶରେ କବି ଆମକୁ ନେଇ ପହଞ୍ଚାଇ ଦେଇଛନ୍ତି, ସେତେବେଳେ ଆମେ କେବଳ ନନ୍ଦକିଶୋରଙ୍କ ସହିତ ଉପଭୋଗ କରୁ ପାହାଡ଼ ତଳର ଝୁଲି ମଥାନମରା ପଲ୍ଲୀ, ତାହାର ସୁଖ ଦୁଃଖ, ହସ କାନ୍ଦ, କେଳ ଲୁଣରେ ସଂସାର, ପୋଖରୀ କୂଳରେ ଗାଁ ଝିଅ ବୋହୂଙ୍କର ଜୀବନ ଚିତ୍ର, ତଳଗ୍ରାମ ମୂଳରେ ପଲ୍ଲୀବଧୂର ପ୍ରଣତି, ଗାଁ ଦାଣ୍ଡର ହାଳପୋଈ କାଳବାଙ୍କ ସଂସାର ନେଇ ଗାଁର ସାଉକାର ଦୋକାନ, ବିରହୀ କାନ୍ତାର ଶୁଭକାଉ ନିକଟରେ ଖବର ପାଇଁ ବ୍ୟାକୁଳତା, ବୁଢ଼ୀମା କୋଳରେ ଚପ ଶୁଣୁ ଶୁଣୁ ତନ୍ଦ୍ରାର ଅନୁଭୂତି, ବରଷା ଦାଣ୍ଡର ଶିଶୁ ଖେଳ, ଇତ୍ୟାଦି । ଆମ ଆଗରେ ଏ ସବୁ ସେତେବେଳେ ଜୀବନ୍ତ ହୋଇଉଠେ । ଆମେ ଭାବୁ, ସତେ ଯେପରି ପଲ୍ଲୀର ସେହି ପ୍ରାଣବନ୍ତ ଜୀବନ ମଧ୍ୟରେ ଆମେ ଜଣେ ହୋଇ ପଡ଼ିଛୁ । ତାଙ୍କର ଆଉ ଗୋଟିଏ ବିଶେଷତ୍ୱ ହେଉଛି ଖଣ୍ଡକବିତା । ଗୀତିକବିତାର ପ୍ରସାର ଆଧୁନିକ ଯୁଗରେ ଅତ୍ୟଧିକ ପରିମାଣରେ ସମ୍ଭବ ହୋଇଛି । ଗୀତିକବିତା ବା ଲିରିକ୍ ସାହିତ୍ୟରେ ଫକୀର ମୋହନ, ମଧୁସୂଦନ, ରାଧାନାଥ ପ୍ରଭୃତିଙ୍କର ହାତ ଥିଲେହେଁ ନନ୍ଦକିଶୋର ବଳ ନିଜର ସ୍ୱତନ୍ତ୍ର ପ୍ରତିଭାରେ ନିଜେ ମହାସ୍ଥାନ ହୋଇ ଉଠିଛନ୍ତି ।

ସମାଲୋଚକମାନେ କହିଥାନ୍ତି, ଫକୀରମୋହନ ଆମ୍ଭମାନଙ୍କୁ ଗଦ୍ୟରଚନାରେ ପଲ୍ଲୀ ସଂସାରର ଦାଣ୍ଡଆଡ଼ର ଯେଉଁଳି ଚିତ୍ର ଦେଇଛନ୍ତି, ନନ୍ଦକିଶୋର ସେହିପରି ତାଙ୍କର ବହୁ ଲିରିକ୍ ମାଧ୍ୟମରେ ଭିତର ଆଡ଼ର ଚିତ୍ର ଦେବାରେ ସମର୍ଥ ହୋଇଛନ୍ତି । ମାତ୍ର 'ଶର୍ମିଷ୍ଠା' ଅଥବା "କୃଷ୍ଣ କୁମାରୀ"ରେ ଯେପରି କୌଣସି ନୂତନତା ତାଙ୍କର ପରିଲକ୍ଷିତ ହୁଏନାହିଁ ।

ଗାଁର ଭୌଗୋଳିକ ଜୀବନ ହିଁ କେବଳ ଚିତ୍ରଣ କରି ସୁଖୀ ହୋଇ ନାହାନ୍ତି ! ଗାଁର ଝିଅ ବୋହୂ, ବୁଢ଼ା ହଳୁଆ, ପିଲା ସମସ୍ତଙ୍କ ମୁହଁରେ ଯେଉଁ ଢଙ୍ଗ ଢମାଳି, କଥାବାର୍ତ୍ତା ନିତିଦିନ ପ୍ରାଣବନ୍ତ ହୋଇଉଠେ, ତାକୁ ନେଇ କବିତା ରଚନା କରିବାରେ ନନ୍ଦକିଶୋର ପ୍ରଥମେ ପଥ ପ୍ରଦର୍ଶକ ହୋଇଛନ୍ତି ଏବଂ ସେଗୁଡ଼ିକୁ ଅମର କରିଛନ୍ତି ।

'ଡ଼ାମରା ଡାଳରେ ଡାମରା କାଉ, କିଏ ମରିବରେ ବୋବାଉଥାଉ'' ''ଝିଅ କହୁଅଛି ମେଘ ବରଷୁଛି ବାଲୁଆ ହେଉଛି ରାହା'' ''ମେଘ ବରଷିଲା ଝିପିରି ଝିପିରି କେଶୁରି ମାଇଲା ବଗା'' ଦେଇଥିଲେ ପାଇ ପଡ଼ିଥିଲେ ଗାଇ, ପଡ଼ିଆ ବାଇବେ ଗୋଧନ ଚରାଇ'' ''ଗଲା ଅଇଲା, ଯା ଦେଖିଲା ତା କହିଲା'' ''ଦାଣ୍ଡକୁ ସୁନ୍ଦର ଗୋଛି, ଘରକୁ ସୁନ୍ଦର ଜୋଛି'' ''ମୁଁ କନ୍ଦୁଥାଏ ନାମିପାଇଁ, ନାମି ଆଖିରେ ଟୋପେ ଲୁହ ନାହିଁ'' ''ତଳ ବରଡ଼ା ଖସୁଛି, ମଝି ବରଡ଼ା ହସୁଛି, ଉପର ବରଡ଼ା ଥାଇ କହୁଛି, ମୋ ଦିନକାଳ ଆସୁଛି'' ''ମନ ଥିଲେକଲେ ଗାଡ଼ୁଆ ଗଙ୍ଗା'' 'ଦରିବ ଦଉଡ଼ି ମଣିଷ ଗାଣ୍ଠି, ଯେଣିକି ଓଟାରେ ତେଣିକି ଯାଇ'—ଇତ୍ୟାଦି ସାଧାରଣ କଥା, ଯାହାକୁ ନିତ୍ୟ ପଲ୍ଲୀ ସଂସାରରେ ମନୋଭାବ ବ୍ୟକ୍ତ କରାଯାଏ, କେବଳ ଫକୀର ମୋହନଙ୍କ ଛଡ଼ା ସାହିତ୍ୟରେ ସେ ସବୁକୁ କେହି ଉପସ୍ଥିତ କରି ନ ଥିଲେ । କବିଙ୍କର କି ଗଦ୍ୟ କି ପଦ୍ୟ, ଉଭୟ ରଚନାରେ ଏ ସବୁ ଜୀବନ୍ତ ହୋଇ ଉଠିଛି ।

ଆଉ ଗୋଟିଏ ବିଶେଷ କଥା ମଧ୍ୟ ଏଠାରେ ଲକ୍ଷ୍ୟ କରିବାର ଅଛି । ନନ୍ଦକିଶୋର କେବଳ ଯେ ପଲ୍ଲୀ ପ୍ରକୃତିକୁ ଭଲ ପାଉଥିଲେ, ତାହା ନୁହେଁ, ପଲ୍ଲୀ ଜୀବନ ସହିତ ସେ ନିଜକୁ

ମିଶାଇ ଦେଇଥିଲେ । ତାହାର ଫଳରେ ରାଧାନାଥ ଏଇ ଦେଶର ରାଜାଝିଅ ରାଜାପୁଅ, ଅଥବା ଫକୀର ମୋହନ ଏଇ ଦେଶର ରାମଚନ୍ଦ୍ର ମଙ୍ଗରାଜ, ଚମ୍ପା, ଶାରିଆ, ପ୍ରଭୃତିଙ୍କୁ ସାହିତ୍ୟରେ ସ୍ଥାନ ଦେଇଲେ ସତ, ପଲ୍ଲୀର ଲୋକ, ଦେଶ, ଇତିହାସ, ଅଥବା ନିଜ ଦୃଷ୍ଟିରୁ ସାହିତ୍ୟକୁ ଚିନ୍ତା କରି ଜାଣି ନ ଥିଲେ । ଯୁଗ ଯୁଗ ଧରି ପଲ୍ଲୀ ସମାଜ ମଧ୍ୟରେ ରାମାୟଣ ମହାଭାରତର ଅପରୂପ ପ୍ରଭାବ ବିଦ୍ୟମାନ ଥିଲା । ଯାତ୍ରା, ପାଲା, ଗୋଟିପୁଅ ପ୍ରଭୃତି ବିଭିନ୍ନ ଅନୁଷ୍ଠାନ ଜରିଆରେ ପୁରାଣ ଅଥବା କେତେକ ବିଶିଷ୍ଟ ଇତିହାସର ଘଟଣାକୁ ନେଇ ପଲ୍ଲୀ ଜୀବନ ବିଭୋର ହୋଇ ରହିଥିଲା । ତେଣୁ ସେହି ଯେଉଁ ପଲ୍ଲୀର ଚିନ୍ତାଧାରାକୁ ଆଧୁନିକ କବିତାରେ ରୂପାୟିତ କରିବାର ମୋହ ନନ୍ଦକିଶୋର ଛାଡ଼ି ପାରିଲେ ନାହିଁ । ଏଣୁ ତାଙ୍କର ପଲ୍ଲୀ ପ୍ରକୃତି ଅଥବା କେତେକ ଭକ୍ତି ବା ଶିକ୍ଷା ମୂଳକ କବିତା ଛଡ଼ା ବହୁ କବିତା ପୌରାଣିକ ଉପାଖ୍ୟାନ ଦ୍ୱାରା ରୂପବନ୍ତ ହୋଇଛି । 'ରାମରାବଣ ଯୁଦ୍ଧ' 'କୁରୁପାଣ୍ଡବଯୁଦ୍ଧ', 'ଏକଲବ୍ୟ', 'ଗୌତମ' ଜଣା ଓ କୌରବୀ, 'ପିଙ୍ଗଳ ଓ ଅଶୋକ. କୁନାଳ ଓ ତିଷ୍ୟରକ୍ଷିତା ସୀତା ବନବାସ, 'କୃଷ୍ଣକୁମାରୀ,' 'ଯଯାତି ଓ ଦେବଯାନୀ'' ପ୍ରଭୃତି ନାନା ପୌରାଣିକ ଓ ଐତିହାସିକ ଲୋକପ୍ରିୟ ଉପାଖ୍ୟାନ ସବୁ ତାଙ୍କର କବିତା ସମ୍ଭାରକୁ ଖାଦ୍ୟ ଯୋଗାଇଛି ।

ରଚନାର ଶୈଳୀ ଦୃଷ୍ଟିରୁ ବିଚାର କଲେ ନନ୍ଦକିଶୋର ରାଧାନାଥ, ମଧୁସୂଦନଙ୍କ ଠାରୁ କିଛି ଦୂର ଆଗେଇ ଆସିଛନ୍ତି । ରାଧାନାଥ ମଧୁସୂଦନ ପ୍ରାଚୀନ କାବ୍ୟ ସାହିତ୍ୟର ଧାରାରୁ ବିଚ୍ଛିନ୍ନ ହୋଇଥିଲେ ମଧ୍ୟ ପୂର୍ବପର ରାଗରାଗିଣୀର ଅନୁସରଣ କରୁଥିଲେ ଏବଂ ଉପମା, ଅନୁପ୍ରାସ ଓ ଯମକର ଆଶ୍ରୟ ନେଇଥିଲେ ।

ମାତ୍ର ନନ୍ଦକିଶୋର ଇଂରେଜି ଏବଂ ବଙ୍ଗଳା ସାହିତ୍ୟର ପ୍ରଭାବରେ ସମ୍ପୂର୍ଣ୍ଣ ନୂତନ ଶକ୍ତି-ର ଛନ୍ଦର ପ୍ରଚଳନ କଲେ । ତାଙ୍କର ରଚନା ଯେଉଁଭଳି ସରଳ ଏବଂ ପ୍ରାଞ୍ଜଳ, ସେହିପରି ଉପମା, ଅନୁପ୍ରାସ ରୂପକ ଇତ୍ୟାଦିର ବନ୍ଧନରୁ ସମ୍ପୂର୍ଣ୍ଣ ମୁକ୍ତ । ଏଣୁ ଆଧୁନିକ ଯୁଗସରଣୀରେ ସେ ପ୍ରଥମେ ବାଟ ଫିଟାଇଲେ ।

ପୂର୍ବ ପ୍ରେରଣା ଯେମେ ଆମର ମଧ୍ୟ ପ୍ରାଚୀନ ସାହିତ୍ୟ ଭକ୍ତି ଅଥବା ପ୍ରେମ ମୂଳକ । ବିଶେଷତଃ ଅଭିଜାତ ସମାଜର ନାୟକ-ନାୟିକା ଅଥବା ଅତିମାନବ ପ୍ରଭୃତି ସାହିତ୍ୟର ବିଷୟବସ୍ତୁ ହୋଇଥିବାରୁ ପଲ୍ଲୀଜୀବନର ଚିତ୍ର ଦେବା ସେଥିରେ ସମ୍ଭବ ହୋଇ ନ ଥିଲା । ପଲ୍ଲୀର ସୁଖଦୁଃଖ ଭିତରେ ଲେଖକ ନିଜକୁ ପ୍ରକାଶ କରିବାର ସୁଯୋଗ ନ ଥିଲା । ମାତ୍ର ବିଂଶ ଶତାବ୍ଦୀରେ ଏହି ସାହିତ୍ୟକୁ ଅଧିକ ପ୍ରଭାବିତ କରିଛି । ଆଜି ପଲ୍ଲୀଜୀବନର ଛପା, ପଲ୍ଲୀର ମାଟିର ମଣିଷ, ମୁଣ୍ଡିଆ ତଳର ପରଜା ଦାଦବୁଢ଼ା, ଅଥବା ଗାଁ ତୋଟା ତଳର ଗୋବର ଗୋଟେଇକୁ ଆମେ ସାହିତ୍ୟରେ ଦେଖିବାକୁ ପାଉଁ । ତଥାପି ପ୍ରାଚୀନ ଗଦ୍ୟ ସାହିତ୍ୟରେ ପ୍ରସଙ୍ଗକ୍ରମେ ବହୁ ସ୍ଥାନରେ ଉପମା ନ୍ୟାୟରେ ପଲ୍ଲୀ ସଂସାରର ଚିତ୍ର ଆମ ଆଖି ଆଗରେ ପଡ଼େ । ଉଦାହରଣ ସ୍ୱରୂପ କବିଶ୍ରେଷ୍ଠ ଉପେନ୍ଦ୍ର ଭଞ୍ଜ ରାବଣର ସୀତାହରଣକୁ ଲକ୍ଷ୍ୟକରି ବୈଦେହୀଶ ବିଳାସରେ ଲେଖିଛନ୍ତି—

"ବିଧିରେ ପ୍ରଜାପତି-ନପ୍ତା ଅର୍ଥୀ
ବ୍ୟାକୁଳ ବଳୀବର୍ଦ୍ଦ ଯୋଚି ତଥି
ବଳେ ହରଷ ପ୍ରଜାଙ୍କୁ ଘଉଡ଼
ରୁଣିବାକୁ ପ୍ରେମରଶିକ ନେଉ
ବଳ ଥିଲେ ତୁମେ
ବିଚ୍ଛେଦ ( ଶି ) ସୀରକୁ ଦ୍ୱନ୍ଦ୍ୱ ଆରମ୍ଭେ ।"

( ଏକବିଂଶ ଛାନ୍ଦ )

ଅର୍ଥାତ୍ ଗ୍ରାମାଧିକାରୀ ଲୋଭପରବଶ ହୋଇ ପ୍ରଜାର ଭୂମିରେ ବଳଦ ଯୋଚି ବଳତ୍କାରରେ ତାଙ୍କୁ ଘଉଡ଼ି ତାର ଜମିରେ ଶସ୍ୟ ରୋପଣ କଲା ପରି ରାବଣ ସୀତାଙ୍କ ହୃଦୟସ୍ୱରୂପ ଭୂମିରେ ଦୁଃଖରୂପ ବଳଦ ଯୋଚି ଅର୍ଥାତ୍ ଭୟ ଦେଖାଇ, ବଳତ୍କାରରେ ତାଙ୍କର ଆନନ୍ଦରୂପକ ପ୍ରଜାକୁ ତଡ଼ି ନିଜର ଅନୁରାଗରୂପକ ଶସ୍ୟକୁ ବୁଣିବାକୁ ଇଚ୍ଛା କରିଅଛି । ମାତ୍ର ବଳଶାଳୀ ପ୍ରଜା ଏହାର ପ୍ରତିଦାନରେ ଯେପରି ଗ୍ରାମାଧିକାରୀର ସମର ଅର୍ଥାତ୍ ଲଙ୍ଗଳ ଧ୍ୱଂସ କରେ, ସେହିପରି ରାମଚନ୍ଦ୍ର ଯୁଦ୍ଧ କରି ରାବଣର ଶିର ଛେଦନ କରନ୍ତି ।

ଏହିଭଳି ପ୍ରସଙ୍ଗକ୍ରମେ ବହୁ ଉଦାହରଣ ଉପେନ୍ଦ୍ରଭଞ୍ଜ, ଅଭିମନ୍ୟୁ,ଦୀନକୃଷ୍ଣ ପ୍ରଭୃତି କାବ୍ୟକାରମାନଙ୍କ ଲେଖାରୁ ମିଳିଥାଏ । ମାତ୍ର ପଲ୍ଲୀକବି ନନ୍ଦକିଶୋର ବଳ ପଲ୍ଲୀର ଜୀବନ୍ତ ଛବି ଯେଉଁଭଳି ଭାବରେ ଦେଇଛନ୍ତି, ସେ ଇଂରେଜ କବି ଗୋଲଡ଼ସ୍ମିଥଙ୍କ ସହିତ ତୁଳନୀୟ ହୋଇପାରନ୍ତି । ଗୋଲ୍ଡ଼ସ୍ମିଥ ତାଙ୍କର 'ଭ୍ରମଣକାରୀ Traveller ଏବଂ ପରିତ୍ୟକ୍ତ ଗ୍ରାମ (Deserted village) କବିତାରେ ପଲ୍ଲୀ ଜୀବନର ନିପୁଣ ଛବି ଟାଣିଛନ୍ତି । ତାଙ୍କର ପ୍ରିୟ ପଲ୍ଲୀର ଦୃଶ୍ୟରେ ମୁଗ୍ଧ ହୋଇ ପ୍ରାକୃତିକ ନିୟମକୁ ଏଡ଼ି ବସନ୍ତ ଯେପରି ନିତ୍ୟ ବିରାଜମାନ କରୁଥାଏ । ଗାଁ ଜମିଦାରର ଅତ୍ୟାଚାର, ଗାଁର ସ୍କୁଲଘର, ଚଟୀଘର, ଗାଁ ଧର୍ମମନ୍ଦିର, ଇତ୍ୟାଦି ପ୍ରତ୍ୟେକ ସ୍ଥଳରେ ସେ ପଲ୍ଲୀର ଜୀବନ ଅତି ସୁନ୍ଦର ଭାବରେ ଫୁଟାଇଛନ୍ତି । ପ୍ରସିଦ୍ଧ ଇଂରେଜ କବି ଟେନିସନ୍, ମାଥ୍ୟୁ ଆରନଲ୍ଡ, ରବର୍ଟବ୍ରିଜ୍ ପ୍ରଭୃତି ସେମାନଙ୍କ କବିତାରେ ଯେଉଁଭଳି ପଲ୍ଲୀଚିତ୍ର ଦେଇ ଇଂରେଜ ସାହିତ୍ୟକୁ ମହାସ୍ଥାନ କରିଛନ୍ତି, ନନ୍ଦକିଶୋର ଓଡ଼ିଆ ସାହିତ୍ୟ କ୍ଷେତ୍ରକୁ ସେହିପରି ମହାସ୍ଥାନ କରିଛନ୍ତି । ନନ୍ଦକିଶୋରଙ୍କ

ପୂର୍ବାଗ୍ରପଂଥ୍ୟ ଭକ୍ତକବି ମଧୁସୂଦନ ତାଙ୍କର ପ୍ରକୃତି ବର୍ଣ୍ଣନାରେ ସ୍ଥାନେ ସ୍ଥାନେ ପଲ୍ଲୀଚିତ୍ର ଦେବାକୁ ଭୁଲି ନାହାନ୍ତି । ତାଁର ଆବହାଓଆ ମଧ୍ୟରେ ପ୍ରତ୍ୟେକ ଋତୁର ଆଗମନ ଏବଂ ପ୍ରତ୍ୟାଗମନ ମଧ୍ୟରେ ସେ ପଲ୍ଲୀର ସ୍ୱପ୍ନ ଦେଖିଛନ୍ତି । ମାତ୍ର ତାହା ଅଳ୍ପ । ଏକ ସ୍ଥାନରେ ତାଙ୍କର କବିତାରେ ରୂପ ପାଇଛି –

କାହିଁ ଲଉଡ଼ ଧରି ଚରାଏ ଗୋ-ବାଚ୍ଛୁରି
ଗଉଡ଼ ମୁରଲୀ ବଜାଇ,
କାହିଁ ଧାନ ଅମଳ କରଇ କୃଷିବଳ
ଖଳାରେ ବେଙ୍ଗଳା ପକାଇ
କାହିଁବା ଘଟ କାନନରେ
ଖେଳଣ ଶାର୍ଦ୍ଦୂଳ ବଟରେ
କାହିଁ ଗ୍ରାମ ଶ୍ମଶାନେ ଗୃଧ୍ର, ଶୃଗାଳ ଶ୍ୱାନେ
ବୁଲନ୍ତି ବିକଟ ନାଦରେ ।

ଅନ୍ୟ ପକ୍ଷରେ ଫକୀରମୋହନ ତାଙ୍କର ଅଧିକାଂଶ କ୍ଷୁଦ୍ରଗଳ୍ପ ଏବଂ ଉପନ୍ୟାସରେ ପଲ୍ଲୀଚିତ୍ରର ସୁଷମାକୁ ଏଭଳି ଭାବରେ ରୂପ ଦେଇଛନ୍ତି ଯେ ତାହା ଯେ କୌଣସି ଯୁଗରେ ମଧ୍ୟ ପାଠକକୁ ମୁଗ୍ଧ କରିବ । ତାଁର ବାଛ ମଙ୍ଗଳା, ଟା ପୋଖରୀ ଭୂତ, କଳାହାଣ୍ଡି ଚମ୍ପା, ଧୂର୍ତ୍ତ ହରିବୋଲ ବାରିକ, ଶୋଷକ ଜମିଦାର ମଙ୍ଗରାଜ, ନାଖିଦ ଭଗିଆ, ଶାରିଆ, ପ୍ରଭୃତି ପଲ୍ଲୀ ଜୀବନର ସମସ୍ତ କଥା ସେ ଛନ୍ଦଭନ୍ଦ କରି ଦେଇଛନ୍ତି । ସେହିସବୁ ଦୃଶ୍ୟ ସାଧାରଣ ଆଖିରେ ପ୍ରତିଦିନ ପଡ଼େ, ଅଥଚ ତାର ହିସାବ କେହି ରଖନ୍ତି ନାହିଁ । ସେ ସବୁ କଳାକାର ମନରେ ଗଭୀର ରେଖାପାତ କରି ସାହିତ୍ୟରେ

ଅମରତ୍ୱ ପାଏ । ଏହି ଭାବରେ ପଲ୍ଲୀ ପ୍ରକୃତ ନନ୍ଦକିଶୋର ଏବଂ ଫକୀର ମୋହନଙ୍କ ଲେଖନୀରେ ଅମର ହୋଇ ଉଠିଛି । ଉଦାହରଣ ଦେଲେ କଥାଟି ଅଧିକ ସ୍ପଷ୍ଟ ହୋଇ ଉଠିବ। ତାଙ୍କର ପଲ୍ଲୀ କବିତା ମଧ୍ୟରେ କାଳବାରତା' ଅନ୍ୟତମ ଶ୍ରେଷ୍ଠ ରଚନା। ଭକ୍ତକବି ମଧୁସୂଦନ ଏ କବିତାର ଭୂରି ଭୂରି ପ୍ରଶଂସା କରିଅଛନ୍ତି। ତାହା ନିଶ୍ଚୟ ଆମେ ଗାଁରେ ଶୁଣୁ ଅଥଚ ଆଧୁନିକ ଯୁଗର ପ୍ରଭାବ ସଙ୍ଗେ ସଙ୍ଗେ ସେ ସବୁ ଲୋପ ପାଇବାକୁ ବସିଲାଣି, କବି ସେ ସବୁ ପଲ୍ଲୀବାସୀ ମୁଖରୁ ଅବିକଳ ଛଡ଼ାଇ ଆଣିଛନ୍ତି :—

"ଡାମର କାଉରେ ଡାମର କାଉ
ଉଚ୍ଛ ପରବତେ ବୋବାଉ ଥାଉ ।

ଘର ବାର ମଝିରେ ଝିଅ ବୋହୂ ଏକାଠି ହୁଅନ୍ତି । ଦାଣ୍ଡରେ ନାଥ ଭିକ୍ଷା ମାଗି ବୁଲିଯାଏ । ରାମ, ସୀତା, ସାବିତ୍ରୀ, ସତ୍ୟବାନ, ନଳ, ଦମୟନ୍ତୀ, ଗୀତ ଗାଇ ଗାଇ ପଲ୍ଲୀ ପ୍ରାନ୍ତରେ ଆଲୋଡ଼ନ ଆଣେ । ଶୁଭକାର୍ଯ୍ୟ ଉଡ଼ିଯାଏ ଘର ଗୃହ ମଧ୍ୟ ନ ଦେଇ । ନବ ବିବାହିତ ତରୁଣୀ ପ୍ରାଣପ୍ରିୟର ଅବର୍ତ୍ତମାନରେ ବିକଳ ହୋଇଉଠେ ଏବଂ ତାର ଖବର ପାଇବା ପାଇଁ କାଉକୁ ଆହାର ଦେଇ ବାରତା ପଚାରେ । କି ଜୀବନ୍ତ ଅଥଚ ଅତି ସତ୍ୟ ଘଟଣା ହୃଦୟକୁ ବାରମ୍ବାର ସ୍ପର୍ଶ କରିଥାଏ ।

ତାହାଣିଆ ଘର ବୁଡ଼ିଯାଉଚି । ବୁଢ଼ୀମା'ର କୋଳରେ ଅବୋଧ ଶିଶୁ ହଳଦି, ତେଲ ଲଗାଇ ଅଭ୍ୟଙ୍ଗ କରୁଛି । ବୁଢ଼ୀମା 'ବାଦମନ' ଭଳି କେତେ ଗପ କହି, କେତେ ଠାରି ଅବୁଝା ନାତିକୁ ବୁଝାଇବାରେ ଲାଗିଛି—

"ତାଆଁଶିଆ ଖରା ପଡ଼ୁଛି ବେଳ ଯାଉଛି ବୁଡ଼ି,
କି ସୁନ୍ଦର ପାରା ଯୋଡ଼ାଏ ଯାଉ ଅଛନ୍ତି ଉଡ଼ି ।
ଆସ ଆସ ପାରା ଯୋଡ଼ିକ ମୋର ପିଢ଼ାରେ ବସ,
ଖାଇବାକୁ ଦେବି ତୁମଙ୍କୁ ମୁହିଁ ନଡ଼ିଆ ରସ ।
ପିଇବାକୁ ଦେବି ତୁମକୁ ପଦ୍ମ ପୋଖରୀ ପାଣି,
ଶୋଇବାକୁ ଦେବି ଖଟୁଲୀ ମାଳୀଘରୁ ମୁଁ ଆଣି ।
ମାଳୀଘର ଖଟୁଲିରେ ଯେ ବାଉଁଶର ପାଟିଆ,
ମାଆ ଙ୍କ ଅଙ୍କର ଗୋଡ଼ରେ ଚନ୍ଦନର ଝୁଣ୍ଟିଆ ।
ଶାରୀ ପଚାରିଲା ଶୁଆ ରେ କେଉଁ ଦାଣ୍ଡରେ ଯିବା,
ଶୁଆ ବୋଲେ ଶାରୀ ଶୁଣ ଗୋ ବଡ଼ଦାଣ୍ଡରେ ଯିବା ।
ବଡ଼ ଦାଣ୍ଡେ ଦାଣ୍ଡେ ଯାଆନ୍ତେ ଯାଉଁ ଗୋବର ଲଣ୍ଡି,
ଲିପି ପୋଛି ଦେଇ ଯାଆ ମା ପୂଜି ମଙ୍ଗଳଚଣ୍ଡୀ ।"

"ନବର୍ଷ ଭାବନାରେ" ମାଆ କୋଳରେ ନିଜକୁ ବସି ଅତୀତର ଗୁପ୍ତପୁଆ ପଲ୍ଲୀ ଜୀବନର ଅମର ଚିତ୍ର ସିଦ୍ଧ ଶଦଙ୍କର ଭାବରେ ଆମ ଆଗରେ ବାଢ଼ି ଦେଇଛନ୍ତି । କେଉଁଠି ଟିକ୍କା ନୂଆ ବୋହୂ ପାଣି ଆଣୁ ଆଣୁ ତାର ପାଦ ଖସିଯାଉଛି । ଦୁଷ୍ଟ ପିଲାଏ ତାକୁ ମାରି ଉପଭୋଗ କରୁଛନ୍ତି । କେଉଁଠି ବାଟ କଡ଼ରେ ନୂଆ-ବୋହୂଟିଏ ଅମର ମଣିଷକୁ ଦେଖି ବାଟଘାଙ୍କି ଆ ହେଉଛି, ଲାଜରେ ଝାଉଁଳି ପଡ଼ୁଛି । ମା କୋଳରେ ଶିଶୁର ମନେ ପଡ଼ୁଛି, ଶଅରୁଣୀଙ୍କର ଜାମୁଡ଼ାଳି ନାଚ, ଭାଦୁଅ ମାସର ଜହ୍ନି ଫୁଲ ଗୀତ, ଖୁଦୁକୁଣୀ ଓଷା ମେଳା, ଗାଁ ଯାତର ତାଡ଼କା ରାକ୍ଷସୀ, ରାମ ହନୁମାନ ସାଜ, ଭୀମ ଅର୍ଜୁନ, ସାଧବ ଝିଅ, ରଜା ପୁଅ କଥା, ଚକୁଳିଆ ପଣ୍ଡା କଥା, ବାଉଁଶବଣରେ ଭୂତ କଥା, କାହ୍ନୁ-

ବାଡ଼ରେ ନିଜ ଘୁଷିକୁ ଦେଖି ଡରିବା, ଆମ୍ବବଗିଚାରେ ଶିଆଳ ଲୁଚି ଚାଲ ଦୋଳି ଖେଳୁ ଖେଳୁ ଚାହାଁଡ଼ ଉପରେ ମେଘଚଳ ଦେଖି ମୁଗ୍ଧ ହେବା, ସବୁ କିଛୁ ମନେ ପଡ଼ୁଛି । ପୁଣି ଆଖି ଆଗରେ ନାଚଉଠେ ବର୍ଷା ଦିନର ସବୁଦୃଶ୍ୟ ପଡ଼ିଆରେ ଛତୁଢୋଳା ପଲ୍ଲୀ ଜୀବନର କଇଁଆ ଲତା, ସାହାଡ଼ା ଡାଳେ ବଣଭୋଜି । ତାପରେ ଚତୁର୍ମାସ୍ୟାର ବର୍ଷଣ ସନ୍ଧ୍ୟା ଆସେ । ପଲ୍ଲୀବଧୂ ମାଈ ଅନ୍ଦରରେ କବାଟର ଲହର ଢୋଳ ଗଗ୍ର ନେଇ ଚାଲିଯାଏ ପୋଖରୀ କୂଳକୁ ଝିଁଝିପୋକ ନୂଆବୋଉ ଜାଲେଣି ସଜାଡ଼େ । ଦୂରରୁ କୃଷକ ଅଜ ଗୋପାଳ ମୃଦଙ୍ଗରେ ସଙ୍ଗୀତର ମୂର୍ଚ୍ଛନା ଲହର ତୋଳେ । ବର୍ଷା ବାଦଲକୁ ଦେଖି ପିଲାଏ ବାଉଆ ପରି ନାଚି ଗୋଡ଼ାନ୍ତି, ଚନ୍ଦ୍ରାମୁଣ୍ଡେ ନୂଆବୋହୂ ପାଖେ ଶିଶୁ ବର୍ଷାଗୀତ ଶୁଣିବାକୁ ଭଲପାଏ ।

ନନ୍ଦକିଶୋରଙ୍କ ଲେଖନୀ ଛଡ଼ା ଏଭଳି ଅଭିବ୍ୟକ୍ତି ଆଉ କାହାଠାରେ ସମ୍ଭବ ?

"ଲୁଣ ତେଲ ମସଲା ଗୋ ନିଅ
ଗଚ ଚାଳି ଭାଳି ଶୁଙ୍ଘି ଦିଅ ।"
ଶୁଣି ଏ ଉଠି ଆ ଡାକ ଘରଣୀଏ ଡାକ ହାକ
ହୋଇଣି ଅସନ୍ତି, ପୁଣି ହୁଏ ଦେବା ନେବା
ଧାନ ରବି ପଇସାରେ ମିଳେ ଯାକୁ ଯେବା ।

ଅଥବା—

ଗ୍ରାମ ଜମିଦାରଙ୍କର ଘର
ଦାଣ୍ଡେ ଚାଲିବାକୁ ମାଡ଼େ ଡର
ସାରଣି ସ୍ନାନ ପ୍ରଭାତେ ଉଚ୍ଚ ପିଣ୍ଡାରେ ସାଆନ୍ତେ
ବସିଣ କରନ୍ତି ସେବା ପୂଜା ବିଧିମାନ ।"

ଏ ସବୁ ଗାଁର ନିତିଦିନିଆ ଦୃଶ୍ୟ । ସତ୍ୟ ଶିବ ସୁନ୍ଦର ମୂର୍ତ୍ତିମାନ ହୋଇ ଉଠିଛୁ ଏହି ପଲ୍ଲୀ ଜୀବନରେ । ନନ୍ଦକିଶୋରଙ୍କ ପରେ ପଲ୍ଲୀର ଏହି ଶାନ୍ତ ସରଳ ଚିତ୍ର ପ୍ରଦାନ କରିବାରେ ଖୁବ୍ ଅଳ୍ପ ଲେଖକ ସଫଳ ହୋଇଛନ୍ତି କହିଲେ ଚଳେ ।

ନନ୍ଦକିଶୋର କାବ୍ୟ, କବିତା, ପ୍ରବନ୍ଧ, ଉପନ୍ୟାସ, କ୍ଷୁଦ୍ର ଗଳ୍ପ ପ୍ରଭୃତି ବିବିଧ ମାଧ୍ୟମରେ ବହୁ ପୁସ୍ତକ ଲେଖିଛନ୍ତି । ତେବେ ତାଙ୍କର କାବ୍ୟ ଅଥବା ଉପନ୍ୟାସ ଏବଂ ବହୁ କବିତା କେବଳ ଆଦର୍ଶମୂଳକ ପର ମନେହୁଏ ପୌରୋହିତ୍ୟ ଭଣ୍ଡାମି, କନ୍ୟାଦାୟ ପ୍ରଥା, ବିଧବା ବିବାହ ଯୌତୁକ ପ୍ରଥା, ସରଳ ବିଶ୍ୱାସରେ ଅସ୍ୱାସ୍ଥ୍ୟକର ପାଦୁକ ସେବା ପ୍ରଭୃତି ସମାଜର ବିଭିନ୍ନ କୁସଂସ୍କାର ବିରୁଦ୍ଧରେ ସେ ଲେଖନୀ ଚଳାଇଛନ୍ତି । ପୁରୁଷ ଚରିତ୍ର ଅପେକ୍ଷା ତାଙ୍କ ଲେଖାରେ ନାରୀ ଚରିତ୍ର ଅଧିକ ସ୍ପଷ୍ଟ ଏବଂ ଉଜ୍ଜ୍ୱଳ ହୋଇ ଉଠିଛି । କେତେକ କବିତାରେ ସେ ନିଜକୁ ଶିକ୍ଷକ ଆସନରେ ବସେଇ ନୀତି ଶିକ୍ଷା ଦେବାକୁ ପ୍ରୟାସୀ ହୋଇ ଥିବାରୁ ସାହିତ୍ୟର ଲକ୍ଷ୍ୟ ଓ କଳା କ୍ଷୁଣ୍ଣ ହୋଇଅଛି ।

ତାଙ୍କର ସମସ୍ତ ରଚନା ମଧ୍ୟରେ ଏକ ନିର୍ଦ୍ଦିଷ୍ଟ ଜୀବନ ଦର୍ଶନର ଆମେ ସୂଚନା ପାଉ । କବିବର ରାଧାନାଥ ଗଭୀର ନୈରାଶ୍ୟବାଦୀ ଥିଲେ । ଜୀବନକୁ ସେ ହାହାକାର ମଣୁଥିଲେ । 'ବାହୁଡ଼ିବି ଏବେ ଦାରୁଣ ସଂସାରେ' କହି ଚିଲିକାଠାରୁ ଦୁଃଖରେ ସେ ବିଦାୟ ନେଇଥିଲେ । ଏ ସଂସାର; ଏ ସମାଜ ତାଙ୍କୁ ଆନନ୍ଦ ଦେଇ ପାରୁ ନ ଥିଲେ । ଜୀବନର ସ୍ୱାଦ, ଜୀବନ ସମ୍ଭୋଗ ସେ ଏହି ମାଟିର

ସଂସାରରେ ଖୋଜି ପାଇ ନଥିଲେ । ମାତ୍ର ଅନ୍ୟ ପକ୍ଷରେ ଉତ୍କଳର ମଧୁସୂଦନ ଘୋର ଆଶାବାଦୀ ଥିଲେ । ସମସ୍ତ ଦୁଃଖ ଶୋକ ମଧ୍ୟରେ ସେ 'ଧର ଧୈର୍ଯ୍ୟ ଘେନରେ ସାନ୍ତ୍ୱନା' କହି ସୃଷ୍ଟିର ଅମୃତ ପଦ୍ମ ପିଇବାକୁ ଆହ୍ୱାନ ଦେଇଥିଲେ । ଉପନିଷଦର ସେହି ଋଷିର ଆନନ୍ଦବାଦ ଏବଂ ଆଶାବାଦର ବାଣୀ "ଆନନ୍ଦଦେବ ଇମାନି ଭୂତାନି ଜାୟନ୍ତେ ଆନନ୍ଦେ ଚ ବିଲୀୟନ୍ତେ" ତାଙ୍କ ପ୍ରାଣରେ ବାରମ୍ବାର ଆଲୋଡ଼ନ ସୃଷ୍ଟି କରୁଥିଲା । ମାତ୍ର ଅନ୍ୟ ପକ୍ଷରେ ନନ୍ଦକିଶୋର ବଲ "ନୁହେ ଏ ସଂସାର ସୁଖ ଶାନ୍ତିର ସ୍ଥଳ" ବୋଲି ଘୋଷଣା କରିଛନ୍ତି । ସଂସାରର ଜୀବନ-ଯୁଦ୍ଧରେ ଭାଇ ଗଳାରେ ଭାଇ ଛୁରି ଦେଉଛି । ନିପଟ ସ୍ୱାର୍ଥପର ହୋଇ ମଣିଷ ଆପଣା ସୁଖରେ ଧାଉଁଛି । ଧନପାଇଁ ମଣିଷ ପିତା ମାତା, ବନ୍ଧୁ ପ୍ରୀତି ସମସ୍ତ ପର କରି ଦେଉଛି । ବଳୀୟାନ ଲୋକ ଦୁର୍ବଳ ଉପରେ ଅତ୍ୟାଚାର କରି ନିଜର ଲାଭ ଉଠାଇବାରେ ଲାଗିଛି, କେତେ ରାବଣ ସମାଜରେ ପରସ୍ତ୍ରୀ ହରଣ କରୁଛନ୍ତି । କେତେ ପରଦାରା ଅନ୍ୟ ପୁରୁଷ ନିକଟରେ ଆତ୍ମସମର୍ପଣ କରୁଛନ୍ତି । ଦୁଃଖ ବିସମ୍ବାଦ ହାହାକାରେ ପୂରି ରହିଛି । ଏ ସବୁ ଭୀଷଣ ଦୃଶ୍ୟ ମଧ୍ୟରେ କବି ଅଧୀର ହୋଇ ମଧୁସୂଦନଙ୍କ ପରି ବ୍ରହ୍ମବାଦର ସ୍ୱପ୍ନ ଦେଖିପାରି ନାହାନ୍ତି — ଜଗତର ମଙ୍ଗଳ ବିଧାନ ଭିତରେ ଆନନ୍ଦବାଦ ଆଶା ବାଦର ସ୍ୱପ୍ନରେ ବିଭୋର ହୋଇ ପାରିନାହାନ୍ତି ମାତ୍ର ବାସ୍ତବ ଜୀବନ-ଯୁଦ୍ଧରେହିଁ ଜୀବନ ସମ୍ଭୋଗ, ଜୀବନର ସ୍ୱାଦ ଉପଲବ୍ଧି କରିବା ଏ ଯୁଗର ସାହିତ୍ୟର ବିଶିଷ୍ଟ ଲକ୍ଷଣ । ସେ ପଳାୟନପନ୍ଥୀ ହେବାକୁ ଚାହେଁ ନାହିଁ । ନନ୍ଦକିଶୋର ସମୟେ ସମୟେ ଆଶାବାଦର ସ୍ୱପ୍ନ ଆମ ଆଗରେ ଥାପିଛନ୍ତି ସତ, କିନ୍ତୁ ତାହା ସେତେ ବାସ୍ତବ ହୋଇପାରି ନାହିଁ ।

ସେ ଯାହାହେଉ, ନନ୍ଦକିଶୋର ତାଙ୍କର ସ୍ୱତନ୍ତ୍ର ସୃଷ୍ଟି ଦ୍ୱାରା ଓଡ଼ିଆ ସାହିତ୍ୟରେ ଚିରଦିନ ଅମର ରହିବେ । ଦିନ ଆସୁଚି, ଯେତେବେଳେ ତାଙ୍କ ପଲ୍ଲୀକବିତାର ପ୍ରସାର ଦିନୁ ଦିନ ଅଧିକ ହେବା ସନ୍ଦେହ ନାହିଁ ।

---

ସହକାର—ଶ୍ରାବଣ ୧୩୫୭ ଏକାଦଶ ସଂଖ୍ୟା—ଷଷ୍ଠତ୍ରିଂଶଭାଗ

# ବିପ୍ଳବୀ ନେତା ଧରଣୀଧର

ଓଡ଼ିଶାର ପାଠୁଆ ସଂସାରରେ ଧରଣୀଧର କାହାରି ଅପରିଚିତ ନୁହେଁ । କାରଣ ଆଧୁନିକ ଓଡ଼ିଆ ସାହିତ୍ୟର ବ୍ୟାସକବି ଫକୀରମୋହନ ସେନାପତି ନିଜର ଆତ୍ମଚରିତରେ ଧରଣୀଧରଙ୍କୁ ସ୍ଥାନ ଦେଇ ତାହାଙ୍କୁ ଅମର କରି ଯାଇଛନ୍ତି । ଯେଉଁମାନେ ଫକୀରମୋହନଙ୍କ ଆତ୍ମଚରିତ ପଢ଼ିବାର ସୁଯୋଗ ଲାଭ କରି ନାହାନ୍ତି ; ସେମାନେ ପିଲା ବୟସରେ ପାଠ୍ୟ ପୁସ୍ତକରେ ଫକୀରମୋହନଙ୍କ ବିଷୟ ପଢ଼ିଲାବେଳେ ମହାରାଣୀ ପୁତ୍ର ଧରଣୀଧର ପାଇଁ ପାନ ମଗାଇ ପଠାଇବା ନାମରେ କପଟି ସେନାପତି ମହାଶୟ ପୁଲିସ ଫୌଜ ମଗାଇ ପଠାଇଥିଲେ, ତାହା ନିଶ୍ଚୟ ପଢ଼ିଛନ୍ତି । ୧୮୯୧ ମସିହା ମେ ତା୧୭ରିଖ ଦିନ ସେ ଚିଠି ଫକୀରମୋହନ ଲେଖିଥିଲେ । ତାହା ଏପରି—"ଭୋଳାନାଥ ଖମାରିଆ ଜାଣିବୁ—ମହାରାଣୀ ପୁତ୍ରଙ୍କ ସକାଶେ ନିତାନ୍ତ ଦରକାର—ଅତିଶୀଘ୍ର ଶହେ ହେଲେ ପାନ ଦୁଇଶ ଗୁଆ ପଠାଇବୁ । ଉତ୍ତର ପଠୁ ମାହାର କରି ଆଖୁବାଡ଼ିକୁ ଶୀଘ୍ର ପାଣି ବୁହାଇବୁ । ନୋହିଲେ ଆଖୁବାଡ଼ି ବିନାଶ ଯିବ ବୋଲି ଜାଣିବୁ ।"

## କେନ୍ଦୁଝରରେ ପ୍ରଜା ବିଦ୍ରୋହ :

ଉପରୋକ୍ତ ଘଟିଣି ଇଂରେଜ ସରକାରଙ୍କ କର୍ମଚାରୀଗଣ ଉଦ୍ଧ ଅର୍ଥ କରିଥିଲେ ଏବଂ କେନ୍ଦୁଝର ବିଦ୍ରୋହ ଦମନ ପାଇଁ ତୁରନ୍ତ ଶସ୍ତ୍ରଧାରୀ ସୈନ୍ୟ ପଠାଇ ଅତି ନିର୍ମମ ଭାବରେ ତାହା ଦମନ କରିଥିଲେ । ଏହି ବିଦ୍ରୋହ ସଂପର୍କରେ ଫକୀରମୋହନ ଲେଖିଥିଲେ—"ମୋହର କେଉଁଝର ମେନେଜରୀର ଚତୁର୍ଥ ବର୍ଷ କେଉଁଝରରେ ଭୟଙ୍କର ପ୍ରଜା ବିଦ୍ରୋହ ଆରମ୍ଭ ହେଲା । ସନ ୧୮୯୧ ମସିହାରେ ଏହି ବିଦ୍ରୋହ ଉପସ୍ଥିତ ହୋଇଥିଲା (୧) ଏହି ସମୟରେ ଫକୀରମୋହନ କେଉଁଝର ରାଜ୍ୟର ଆନନ୍ଦପୁର ଇଲାକାର ଭାରପ୍ରାପ୍ତ କର୍ମଚାରୀ ଥିଲେ । ପ୍ରଜାମାନେ ବିଦ୍ରୋହ କରିବାରୁ କେନ୍ଦୁଝର ରାଜା ଇଂରେଜମାନଙ୍କର ସାହାଯ୍ୟ ଭିକ୍ଷା କରିଥିଲେ । ଏହି କାର୍ଯ୍ୟରେ ତାଙ୍କର କର୍ମଚାରୀ ଫକୀରମୋହନ ନାନା କୂଟନୀତି ପ୍ରୟୋଗ କରି ଇଂରେଜ ସରକାରଙ୍କୁ ରାଜାଙ୍କ ସପକ୍ଷରେ ବୁଝାଇ ପାରିଥିଲେ । କାରଣ କେନ୍ଦୁଝର ରାଜା ସୁଶାସକ ନ ଥିଲେ । ତାଙ୍କର ଅତ୍ୟାଚାରର କାହାଣୀ ଚତୁର ଏବଂ କୁଶଳୀ ଇଂରେଜ କର୍ମଚାରୀମାନଙ୍କୁ ଅବିଦିତ ନ ଥିଲା । ତେଣୁ ସାହାଯ୍ୟ ଭିକ୍ଷା ଉଦ୍ଦେଶ୍ୟରେ ଫକୀରମୋହନ କଟକରେ ଗଡ଼ଜାତ ବିଭାଗର ସୁପରିଣ୍ଟେଣ୍ଡେଣ୍ଟ ଟୟୁନବୀ ସାହେବଙ୍କୁ ପ୍ରଥମେ ସାକ୍ଷାତ କଲାବେଳେ ସାହେବ କହିଥିଲେ—"ଆଚ୍ଛା ହେଲା, ଭଲ ହେଲା, ରାଜା ଯେପରି ଅତ୍ୟାଚାରୀ, ଗଭର୍ଣ୍ଣମେଣ୍ଟଙ୍କ ହୁକୁମ ଅମାନ୍ୟକାରୀ, ସେହିପରି ଦଣ୍ଡ ଭୋଗ କରନ୍ତୁ । ଅମ୍ଭେ କିଛି ମାତ୍ର ସାହାଯ୍ୟ କରିବୁ ନାହିଁ । ( ୨ )

---

୧ – ଆତ୍ମଚରିତ, ପ୍ରଥମ ସଂସ୍କରଣ-୧୯୨୭ ପୃ୧୧୯

୨—ଏଜନ୍.........ପୃ୧୨୨

ମାତ୍ର ଫକୀରମୋହନ ଥିଲେ ଦଗ୍ଧେନ୍ଦ୍ରବନ୍ଧା । ସେ ଯେକୌଣସି ପ୍ରକାରେ ଟିସ୍ପନଗ୍ଧ ସାହେବଙ୍କୁ ରାଜାଙ୍କ ସପକ୍ଷରେ ପକ୍ଷିତ କରି ପାରିଥିଲେ । ରାଜାଙ୍କ ସପକ୍ଷରେ ଏବଂ କେନ୍ଦୁଝର ବିଦ୍ରୋହ ସମ୍ପର୍କରେ ଫକୀରମୋହନ ଯାହା ଲିପିବଦ୍ଧ କରିଯାଇ ଅଛନ୍ତି ତାହା କେତେକାଂଶ ସତ୍ୟର ଅପଲାପ ପରି ମନେ ହୁଏ ।

## ବିଦ୍ରୋହ ଓ ମେଳି !

ଫକୀରମୋହନ 'କେନ୍ଦୁଝର ବିଦ୍ରୋହ' ବୋଲି ପ୍ରଥମେ ସ୍ୱୀକାର କରିଥିଲେହେଁ ତାହାକୁ ଏକ ସ୍ୱାର୍ଥୀ ଗୋଷ୍ଠିର ମେଳି ବୋଲି ବର୍ଣ୍ଣନାକରି କାଳ କାଳ ପାଇଁ ଏକ ନ୍ୟାୟୋଚିତ ଜନ ଆନ୍ଦୋଳନ ଓ ତାହାର ନେତା ଧରଣୀଧରଙ୍କ କଳଙ୍କିତ ଚିହ୍ନ ପ୍ରଦାନ କରି ଯାଇ ଅଛନ୍ତି । କେନ୍ଦୁଝର ବିଦ୍ରୋହରେ ଆନନ୍ଦପୁର ଇଲାକାର ଲୋକେ ଅଂଶ ଗ୍ରହଣ କରୁନାହାନ୍ତି ଏବଂ ସେହି ରାଜ୍ୟର ପଶ୍ଚିମାଞ୍ଚଳର ଯାବତ ଭୂୟାଁ ପ୍ରଜା ଏହି ଆନ୍ଦୋଳନରେ ଅଂଶଗ୍ରହଣ କରିଛନ୍ତି ବୋଲି ସେ ଟିସ୍ପନଗ୍ଧ ସାହେବଙ୍କୁ ଧାରଣା ଦେଇ, ବୁଝାଇ ଦେଇଥିଲେ । ପୁନଶ୍ଚ କେନ୍ଦୁଝର ରାଜା ଅତ୍ୟାଚାରୀ ନୁହନ୍ତି ଏବଂ ତାଙ୍କର ଅତ୍ୟାଚାର ସମ୍ପର୍କରେ କି ପ୍ରଜା, କି ନିଃସମ୍ପର୍କୀୟ ବାହାର ଲୋକ କେହି ହେଲେ ଗୋଟିଏ ସୁଦ୍ଧା ପ୍ରମାଣ ଦେଇ ପାରିବେ ନାହିଁ ବୋଲି ସେ ଦୃଢ଼ମତ ଘୋଷଣା କରିଥିଲେ । କେବଳ ଭୂୟାଁ ଜାତିରୁ ଲୋକ ଗୋଳଯୋଗ ଆରମ୍ଭ କରିଅଛନ୍ତି । ସେନାପତିଙ୍କ ମତରେ ସେମାନେ ଦୁଷ୍ଟ ପ୍ରକୃତିର ଲୋକ ଏବଂ ମେଳି କରିବା ସେମାନଙ୍କର ସ୍ୱଭାବ । (୩)

---

୩—ଆତ୍ମଚରିତ-ପ୍ରଥମସଂସ୍କରଣ ୧୯୨୭ ପୃ: ୨୨

## ସେନାପତିଙ୍କ ମତରେ ବିଦ୍ରୋହର କାରଣ :

ଫକୀରମୋହନ ଭୂୟାଁମାନଙ୍କୁ ମେଳିଆ ବୋଲି ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ତାଙ୍କ ଆତ୍ମଚରିତରେ ଏହି ବିଦ୍ରୋହ ସମ୍ପର୍କରେ ଯେଉଁ କାରଣମାନ ବର୍ଣ୍ଣନା କରିଛନ୍ତି ତାହା ମଧ୍ୟ ସତ୍ୟର ପରିପୂରକ ହୋଇପାରେ ସନ୍ଦେହ ନାହିଁ । ଏହି ମେଳି ସମ୍ପର୍କରେ ସେ ଦୁଇଗୋଟି କାରଣ ଦର୍ଶାଇ ଅଛନ୍ତି । (ପ୍ରଥମ) ଭୂୟାଁମାନଙ୍କର ଏପର୍ଯ୍ୟନ୍ତ ଏ ଅନ୍ଧବିଶ୍ୱାସ ଥିଲା ଯେ ପ୍ରକୃତରେ କେନ୍ଦୁଝର ରାଜ୍ୟଟା ସେମାନଙ୍କର । ସେମାନେ ଇଚ୍ଛାକଲେ ପୁରୁଣା ରାଜାଙ୍କୁ ନିଯୁକ୍ତ କରିବାର ଅଧିକାର ସେମାନଙ୍କର ଅଛି । ଫକୀରମୋହନ ଏକଥା ସ୍ୱୀକାର କରିନଥିଲେହେଁ ଏହି ପ୍ରଥମ ଯୁକ୍ତିରୁ ଧାରଣା କରାଯାଇ ପାରେ ଯେ ଭୂୟାଁମାନେ ପ୍ରଚଳିତ ଶାସନ ପଦ୍ଧତିରେ ମତପୋଷଣ କରୁ-ଥିବାରୁ ତାହାର ତୁରନ୍ତ ପରିବର୍ତ୍ତନ କାମନା କରୁଥିଲେ । (ଦ୍ୱିତୀୟ) ବର୍ତ୍ତମାନ ବିଦ୍ରୋହର କାରଣ ହେଲା "ମାଛକାଟଣୀ କୋଡ଼" । ଏହାର ଖନନ କାର୍ଯ୍ୟରେ ଭୂୟାଁ ପ୍ରଜାମାନଙ୍କୁ ବେଠିରେ ଧରାଇ ଆଣି କାମରେ ଲଗାଇ ଦିଆ ଯାଉଥିଲା । ସେମାନଙ୍କ ଉପରେ ଅତ୍ୟାଚାରର ସୀମା ନଥିଲା । ତେଣୁ ସେମାନେ ବିଦ୍ରୋହ କରିଥିଲେ । ( ୪ )

## ମେଳି ନା ବିପ୍ଳବ !

ମୋଟ ଉପରେ ମାଛକାଟଣୀ କୋଡ଼ ଖନନ ସମ୍ପର୍କରେ ବେଠି ଜନିତ ଅତ୍ୟାଚାରର ଫଳରେ ଭୂୟାଁମାନେ ମେଳି କରିଥିଲେ

୪ — ଆତ୍ମଚରିତ, ପ୍ରଥମ ସଂସ୍କରଣ-୧୯୨୭-ପୃ୧୨୫ ୨୮

ବୋଲି ଫକୀରମୋହନଙ୍କ ବିବରଣୀରୁ ଜଣାଯାଏ । କିନ୍ତୁ ଫକୀର ମୋହନ ରାଜକର୍ମଚାରୀ ଥିବାରୁ ରାଜାଙ୍କ ସପକ୍ଷରେ ମତ ପ୍ରକାଶ କରିବା ସ୍ୱାଭାବିକ । ତଥାପି ଆତ୍ମଚରିତରେ ଧରଣୀଧରଙ୍କ ନେତୃତ୍ୱରେ ହୋଇଥିବା ଜନଆନ୍ଦୋଳନକୁ ସେ ଯେପରି ହୀନ ଭାବରେ ଚିତ୍ରଣ କରି ଅଛନ୍ତି ତାହା ବାସ୍ତବିକ ଦୁଃଖ ଦାୟକ ।' କାରଣ ତତ୍କାଳୀନ ସମାଜର ଇତିହାସ ଆଲୋଚନା କଲେ ଧରଣୀଧର ଏବଂ କେନ୍ଦୁଝର ବିପ୍ଲବର ମହତ୍ତ୍ୱ ଉପଲବ୍ଧି କରାଯାଇ ଥାଏ ।

୧୮୯୧ ସାଲରେ ଇଂରେଜ ଶାସନ ଏ ଦେଶରେ ସୁପ୍ରତିଷ୍ଠିତ କୌଣସି ପ୍ରକାର ଜନଜାଗରଣକୁ ଶାସନର ସ୍ୱାର୍ଥ ଦୃଷ୍ଟିରୁ ଇଂରେଜ ସରକାର ବରଦାସ୍ତ ନକରିବା ସ୍ୱାଭାବିକ । ବିଶେଷତଃ ଭାରତ ଶାସନ ପାଇଁ ଇଂରେଜ ସରକାର ରାଜା ମହାରାଜା ଜମିଦାର ଭଳି ବହୁ ନ୍ୟସ୍ତ ସ୍ୱାର୍ଥ ଗୋଷ୍ଠୀଙ୍କ ଉପରେ ନିର୍ଭର କରୁଥିବାରୁ ସେମାନଙ୍କ ଅନ୍ୟାୟ ଓ ଅତ୍ୟାଚାର ସମ୍ପର୍କରେ ଅବହିତ ହେଲେ ମଧ୍ୟ ଅତ୍ୟନ୍ତ ବାଧ୍ୟ ନ ହେଲେ ସରକାର ସେମାନଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ ନ କରିବା ସ୍ୱାଭାବିକ । ତେଣୁ ଧରଣୀଧରଙ୍କ ନେତୃତ୍ୱରେ ଯେଉଁ ଐତିହାସିକ ଗଣବିକ୍ଷୋଭ ଏକଦା ଇଂରେଜ ଶାସକବର୍ଗଙ୍କୁ ମଧ୍ୟ ଅତିଷ୍ଠ କରାଇ ଦେଇଥିଲା, ତାହାର କରୁଣ ଇତିହାସ ସାଧାରଣ ପାଠକମାନଙ୍କ ଅଜ୍ଞାତ ରହିଗଲା । ଏଥିପାଇଁ ଫକୀରମୋହନଙ୍କ ବଳିଷ୍ଠ ଲେଖନୀ ବହୁ ପରିମାଣରେ ଦାୟୀ । ଗଡ଼ଜାତ ରାଜ୍ୟକୁ ଇଂରେଜ ଶାସିତ ଅଞ୍ଚଳ ସହିତ ତୁଳନା କରି ସାଧାରଣତଃ ଅନ୍ଧକାର ମୂଳକ ବୋଲି କୁହା ଯାଉଥିଲା । ବ୍ୟକ୍ତିଗତ ଶାସନରେ ସ୍ୱେଚ୍ଛାଚାରିତା ଏବଂ ଅତ୍ୟାଚାରରେ ଲୋକେ ଉଦ୍‌ଭ୍ରାନ୍ତ ବିକଳ ହେଉଥିଲେ ମଧ୍ୟ ତୁଣ୍ଡ ଖୋଲିବା

ପାଇଁ ସେମାନଙ୍କର ଶକ୍ତି ନଥିଲା । ଅଧିକାଂଶ ସମୟରେ ରାଜାମାନେ ନିଜର ବିଳାସ ବ୍ୟସନ ପାଇଁ ପ୍ରଜାମାନଙ୍କୁ ନାନା ଭାବରେ ଶୋଷଣ କରୁଥିଲେ । ବେଠି ଓ ଜୁଲୁମର ଇତିହାସ ତ ଅନ୍ତ-ବହୁତ ସାଧାରଣଙ୍କୁ ଜଣା । କେନ୍ଦୁଝର ବିଦ୍ରୋହ ସମୟରେ ତତ୍କା-ଳୀନ ଓଡ଼ିଶାର ସାମାଜିକ ଏବଂ ଅର୍ଥନୈତିକ ଜୀବନର କିଞ୍ଚିତ ଆଲୋଚନା କଲେ ବିଦ୍ରୋହ ସମ୍ପର୍କରେ ସ୍ପଷ୍ଟ ଧାରଣା ହୋଇ ପାରିବ । ଫକୀରମୋହନ ଏ ବିଷୟରେ ତାଙ୍କର ଆତ୍ମଚରିତରେ ସମ୍ପୂର୍ଣ୍ଣ ନୀରବ ରହିଛନ୍ତି । ଏ ଦିଗରେ ଶାସକ ଫକୀରମୋହନଙ୍କର ହୁଏତ କୃତିତ୍ୱ ଥାଇ ପାରେ, ମାତ୍ର ସାହିତ୍ୟିକ ଏବଂ କବି, ସମ୍ପାଦକ ଏବଂ ଯୁଗଦ୍ରଷ୍ଟା ଫକୀରମୋହନଙ୍କୁ କ୍ଷମା ଦିଆ-ଯାଇ ପାରିବ କି ନାହିଁ, ତାହାହିଁ ବିଚାରିବାର କଥା ।

## ସେ କାଳର ସମାଜଚିତ୍ର:

ଓଡ଼ିଶା ହେଉଛି ବନ୍ୟା ଓ ମରୁଡ଼ିର ଦେଶ । ବର୍ଷକୁ ବର୍ଷ ପ୍ରକୃତିର ପ୍ରକୋପ ଫଳରେ ଓଡ଼ିଶାବାସୀ ନାନା ଦୁଃଖ କଷ୍ଟଭୋଗ କରି ଆସୁ ଅଛନ୍ତି । ତେବେ ଆଜିକାଲି ଅପେକ୍ଷା ସେ କାଳରେ ଅବସ୍ଥା ଆହୁରି ଖରାପ ଥିଲା । କାରଣ ଦେଶରେ ରାସ୍ତାଘାଟର ସୁବିଧା ନଥିଲା । ଥରେ ଦୁର୍ଭିକ୍ଷ ପଡ଼ିଲେ ଲୋକେ ପୋକ ମାଛି ପରି ମରି ଯାଉଥିଲେ । ଦେଶରେ ଶାସକ ଲୋକମାନଙ୍କ ପାଇଁ ଅଧିକ ଧ୍ୟାନ ଦେଉ ନଥିବାରୁ କୌଣସି ପ୍ରକାର ବିକାଶ ମୂଳକ ଯୋଜ-ନାର ସ୍ୱପ୍ନ ମଧ୍ୟ ସମ୍ଭବ ନଥିଲା । ବିଶେଷତଃ କେନ୍ଦୁଝର ବିଦ୍ରୋ-ହର ମାତ୍ର ବାର ତେର ବର୍ଷ ପୂର୍ବରୁ ନଅଙ୍କ ଦୁର୍ଭିକ୍ଷର ପ୍ରାଦୁର୍ଭାବ ଫଳରେ ଓଡ଼ିଶାର ସାମାଜିକ, ଜୀବନ ହତଶ୍ରୀ ହେବା ସ୍ୱାଭାବିକ ।

ମାତ୍ର ସେଣ୍ଟକରେ ପ୍ରକୃତ ଦେଖି ସନ୍ତୁଷ୍ଟ ନଥିଲେ । ସେ କାଳର ଏକ ସଂଖ୍ୟାର ସାପ୍ତାହିକ ପତ୍ରିକା ପାଠକଲେ ଓଡ଼ିଶାର ସେହି ଦୁର୍ଭିକ୍ଷରେ କଷ୍ଟର ଆଲୋକପାତ ହୋଇଥାଏ । "ଖୋରଧା, ଅନୁଗୁଳ ବାସୀଙ୍କ ଅନ୍ନକଷ୍ଟ ଶେଷ ନ ହେଉଣୁ କାଳର ଭୀଷଣ ଦୁନ୍ଦୁଭି ପୁଣି ଦୁଇ ଭିନ୍ନ ସ୍ଥାନରେ ବାଜି ଉଠିଲାଣି । ବାସୁଦେବପୁର ଓ ଭଦ୍ରକ ଥାନା ଇଲାକାରେ ଅତିବୃଷ୍ଟି ଓ ବନ୍ୟା ପ୍ରଯୁକ୍ତ ଫସଲ ନଷ୍ଟ ହୋଇ ଯାଇଥିବାରୁ ସେଠା ଅଧିବାସୀମାନେ ଅତ୍ୟନ୍ତ କଷ୍ଟରେ ସମୟାତିପାତ କରୁଅଛନ୍ତି । ଏମନ୍ତ କି ଚାଉଳ ସେର ଦୁଇଅଣା ହୋଇଅଛି । ଅନେକ ଏକ ଓଳି ଆହାର ପାଉନାହାନ୍ତି ଅଧିକା ବ୍ୟକ୍ତିମାନେ ଜାହାଜରେ ଓ ଜଗନ୍ନାଥ ସଡକ ବାଟେ କଲିକତା ପଳାଉଛନ୍ତି । ଭୋଗରାଇ ଓ କମରଦା ପ୍ରଗଣାର ଅବସ୍ଥା ମଧ୍ୟ ଅନେକ ପରିମାଣରେ ତଦ୍ରୂପ ଅଟେ" । ( * ) "ଧୀରେଧୀରେ ଦୁର୍ଭିକ୍ଷ" ଶୀର୍ଷକ ଏକ ଅଗ୍ରଲେଖାରେ ବାଲେଶ୍ୱରରୁ ପ୍ରକାଶିତ ଏହି ସାପ୍ତାହିକ କେନ୍ଦୁଝର ସମେତ ଅନ୍ୟାନ୍ୟ ଗଡ଼ଜାତ ଅଞ୍ଚଳରେ ମହରଗ ପଡ଼ିବା କଥା ଉଲ୍ଲେଖ କରିଛନ୍ତି । ସେଥିରୁ ଜଣା ଯାଉଛି ଯେ ଖୋର୍ଦ୍ଧା, ପୁରୀ, କଟକ, ବାଲେଶ୍ୱର, କେନ୍ଦୁଝର ବାମଣ୍ଡା, ମୟୂରଭଞ୍ଜ, ଅନୁଗୁଳ ପ୍ରଭୃତି ସର୍ବାଞ୍ଚଳରେ ଅବସ୍ଥା ଉତ୍କଟ ଆକାର ଧାରଣ କରିଅଛି ଏବଂ ଟଙ୍କାକୁ ଚାଉଳ ଷୋଳସେର ମଧ୍ୟ ମିଳୁନାହିଁ । (×) ଧାନ ଚାଉଳ ଅଭାବରେ ଅନ୍ୟାନ୍ୟ ଜିନିଷ ମଧ୍ୟ ସେହି ଅନୁପାତରେ ଦୁର୍ମୂଲ୍ୟ କିମ୍ବା ଦୁଷ୍ପ୍ରାପ୍ୟ ହୋଇଥିଲା । ଲୋକେ ଅଖାଦ୍ୟ ଖାଇବାରୁ ହଇଜା ଓ ଝାଡ଼ାବାନ୍ତି

---

* — ଉତ୍କଳ ଦୀପିକା — ୩।୧୦।୧୮୬୮

× — ଉତ୍କଳ ଦୀପିକା — ୫।୧୧।୧୮୬୮

ର ପ୍ରକୋପ ଦେଖା ଦେଇଥିଲା । ସେହି ସ୍ଥଳରେ ଲୋକଙ୍କର କି ଅବସ୍ଥା ହୋଇଥିଲା, ତାହା ପତ୍ରିକାର ବିବରଣୀ ପାଠକରି ଜାଣିବା ଅପେକ୍ଷା ତହିଁରେ ପ୍ରକାଶିତ "ଦୁର୍ଭିକ୍ଷ ସଙ୍ଗୀତ" ଶୀର୍ଷକ ଏକ କବିତା ପାଠ କଲେ ତାହାର ଜୀବନ୍ତ ଚିତ୍ର ଚକ୍ଷୁ ସମକ୍ଷରେ ନାଚି ଉଠିବ । ସେ ଗୀତଟି ଏହିପରି:—

"ପୃଥ୍ୱୀ ହେଲାଣି କି ନଅଙ୍କ କାଳ
ପଲ ପଲ ବୁଲୁଛନ୍ତି କାଙ୍ଗାଳ ।
ଥୋକେ ହୋଇ ଯୋଗୀ, ଥୋକେ ବଇରାଗୀ
ଥୋକେ ଝାଡ଼ାବାନ୍ଧି ଭଜନ ମାଳ ।
ଉଦର ଦେଖାଇ ଏ ସାହୁ ସେ ସାହୁ
ମାଗି ବୁଲୁଛନ୍ତି ଖତ ଚାଉଳ । ୧
ମୂଲିଆମାନଙ୍କୁ ମୂଲ ମିଳୁନାହିଁ
ବୁଲୁଛନ୍ତି ବହୁ ଅସ୍ଥି କଙ୍କାଳ ।
କାହିଁ ବଣସାରୁ ଓଲୁଅ କରବା
ଖୋଳୁଛନ୍ତି ବହୁ ପଡ଼ୁଛି ଝାଳ । ୨

ଦଅ ଦଅ ଧାନ ବୋଲି ପ୍ରତିଦିନ
ରଜନୀ ନ ପାହୁଁ ଉଠୁଛି ଗୋଳ ।
ସାଆନ୍ତଙ୍କ ବଂଶ ଗଉଡ ମରୁଛନ୍ତି
କେ ଶୁଣୁଛି ମୂଲିଆଙ୍କ ବଚନ । ୩
ପିତା ପୁତ୍ର ଯହିଁ ନିଶାଖୋର ତହିଁ
ଲାଗିଅଛି ଅହର୍ନିଶି କନ୍ଦନ ।
ପିତାକୁ ଲୁଚାଇ ଅଫିମ, ଗଞ୍ଜେଇ
ଖାଏ ପୁଅ ବନ୍ଧାଦେଇ ପିତଳ । ୪

ଗ୍ରାମେ ଗ୍ରାମେ ଓଲଉଠା ରୋଗ ପଶି
ଶତ ଶତ ମରୁଅଛି ଜନ ।
ଘରେ ଘରେ କଣ୍ଠାକାଣ୍ଡ ପଡ଼ିଲାଣି
ଲଭିଲେଣି ଢାଢ଼ି ବଂଶ ନିର୍ମୂଳ । ୫
ଶୁଣ୍ଠି, ଚନ୍ଦ, ତେଲ, ଗୁଡ଼ଆ, ଟାମ୍ବୁଲ
ଛାଡ଼ି ନିଜ ନିଜ ବୃତ୍ତି ସକଳ ।
କେ ଦେଶ ବିଦେଶ ଗମନ୍ତି ବିରସେ
କେ ବୋଲଇ ପୋଡ଼ଯାଉ କପାଳ । ୬
କେତେ କେତେ ଦୁଷ୍ଟ ଜଗି ବାଟଘାଟ
ଲୋକେ ଦେଖି ତହିଁ କରନ୍ତି ଗୋଳ ।
ଦେହେ ଅଗ୍ନି କେହି ଦଅନ୍ତି ଲଗାଇ
ସହି ନ ପାରିଣ ପେଟ ବିକଳ । ୭
ଏତେବେଳେ ଲୁଣ ଦର ହେଲା ଟାଣ,
ନଅ ପଇସାକୁ ଚଉଦ ପଳ ।
କେମନ୍ତେ ବଞ୍ଚିବୁ ଦୁଃଖୀ ପରଜାଏ
କେହି ନ ଶୁଣିଲେ ଆମ୍ଭ ବିକଳ । ୮ । (୭)

## କେନ୍ଦୁଝରର ବିଦ୍ରୋହ ସମ୍ପର୍କରେ କଳ୍ପନା ଜଳ୍ପନା :

ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳ ପରି କେନ୍ଦୁଝରରେ ମଧ୍ୟ ବିଦ୍ରୋହର ମାତ୍ର ବର୍ଷକ ତଳେ ଭୀଷଣ ଅନ୍ନ କଷ୍ଟ ପଡ଼ିଥିବାର ପ୍ରମାଣ ମିଳୁଅଛି । ଓଡ଼ିଆ ଓ ନବସମ୍ବାଦର ୧୮୯୧ ମସିହା ମେ ମାସର ତା୨୦ରିଖ ସଂଖ୍ୟାରେ ପ୍ରଥମେ ରାଜା ପ୍ରଜାଙ୍କ ମନାନ୍ତର

---

୭—ଓଡ଼ିଆ ଓ ନବସମ୍ବାଦ—୫ । ୬ । ୮୯

ସମ୍ପର୍କରେ ସମ୍ବାଦ ପ୍ରକାଶ ପାଇଛି । ପତ୍ରିକା କୌଣସି ନିର୍ଭର ଯୋଗ୍ୟ ସମ୍ବାଦ ଶୁଣିବାକୁ ନ ପାଇ ନାନା କଳ୍ପନା ଜଳ୍ପନା କରିବା ସ୍ୱାଭାବିକ । ବିଶେଷତଃ ସିଂହଭୂମି ଏବଂ କର୍ପ୍ରି ପଦାରେସ୍ଥିତା ଅଶାନ୍ତ ଜାତ ହୋଇ ଅଛି ଏବଂ ଉପରୋକ୍ତ ଅଶାନ୍ତ ଦମନ ପାଇଁ କେତେକ ଦେଶ ପୋଲିସ କର୍ମଚାରୀ ଘଟଣା ସ୍ଥଳକୁ ପ୍ରେରିତ ହୋଇ ଅଛନ୍ତି । କେନ୍ଦୁଝରରୁ ମ୍ୟାନେଜର ଫକୀରମୋହନ ସେନାପତି ଏବଂ ସ୍ୱୟଂ ରାଜା ସାହେବ ବାଲେଶ୍ୱର ଆସି ଟ୍ୟୁନବୀ ସାହେବଙ୍କ ସହିତ ସାକ୍ଷାତ କରି ତୁରନ୍ତ ଫେରିଯିବାରୁ ଗୋଳମାଳ ହୋଇଅଛି ବୋଲି 'ନବସମ୍ବାଦ' ଅନୁମାନ କରୁଛନ୍ତି । ତେବେ ପତ୍ରିକା ଅନୁମାନ କରନ୍ତି ଯେ ସିଂହଭୂମି ସଙ୍ଗେ ସୀମା ବିବାଦ ଥିବାରୁ ସିଂହଭୂମିର ପ୍ରଜାମାନେ କେନ୍ଦୁଝରସ୍ଥ ଆପଣା ଜାତି ଭାଇଙ୍କ ସଙ୍ଗେ ଯୋଗଦାନ କରି ଏ ପ୍ରକାର କାଣ୍ଡ ଘଟାଇଛନ୍ତି ଏବଂ ଅନ୍ୟ କେତେକଙ୍କ ମତରେ କେନ୍ଦୁଝର ରାଜା ଭୂୟାଁ ପ୍ରଜାଙ୍କ ଉପରେ ବେଠି ଇତ୍ୟାଦିର ଜୁଲମ କରିବାରୁ ସେମାନେ ସିଂହଭୂମିସ୍ଥ ଆପଣା ଜାତି ଭାଇଙ୍କ ସାହାଯ୍ୟ ନେଇ ବିଦ୍ରୋହୀ ହୋଇ ଅଛନ୍ତି ।

ବିଦ୍ରୋହ ସମ୍ପର୍କରେ କ୍ରମଶଃ ଅତି ବିଚିତ୍ର ସଂବାଦ ପ୍ରକାଶ ପାଉଅଛି । ସେ ଆନ୍ଦୋଳନ ଥିଲା ଅତ୍ୟନ୍ତ ସବଳ ଏବଂ ସୁନିୟନ୍ତ୍ରିତ । ତେଣୁ ରାଜା ଏକବସ୍ତ୍ର ହୋଇ ନିଜର ପରିବାରଙ୍କୁ ବିଦ୍ରୋହୀଙ୍କ ଘେର ମଧ୍ୟରେ ଛାଡ଼ି ଦେଇ ପ୍ରାଣଧରି ରାଜ୍ୟ ପରିତ୍ୟାଗ କରିଥିଲେ । ବିଦ୍ରୋହୀଙ୍କ ଦଳରେ ପ୍ରାୟ ୧୦, ୧୨ ହଜାର ପ୍ରଜା ମିଳିତ ହୋଇଥିଲେ । ଗଡ଼ ଅଧିକାର କରି ତୋପ, ବନ୍ଧୁକ, ତରବାରି ପ୍ରଭୃତି ଅଧିକାର କରିଥିଲେ । ଧାନ ଆମର, ରାଜ ଭଣ୍ଡାର ଲୁଟି କରିବା ସଙ୍ଗେ ଗଡ଼ର ପ୍ରଧାନ ପ୍ରଧାନ ଲୋକଙ୍କୁ ଖାଦ୍ୟାଦି ଯୋଗାଇବାକୁ ନୋଟିସ ଦିଆ ଯାଉଥିଲା । ଏହାର

ଅନ୍ୟଥା ହେଲେ ସେମାନେ ଶାସ୍ତି ଦଣ୍ଡ ପାଉଥିଲେ । ବିଦ୍ରୋହୀଗଣ ଚତୁର୍ଦ୍ଦିଗରେ ୨ ଟି ଜଗି ରହିଥିଲେ । ପରିଶେଷରେ ମ୍ୟାନେଜର ବାବୁ ଫକୀରମୋହନ ସେନାପତି ମଧ୍ୟ ବିଦ୍ରୋହୀଙ୍କ ହାତରେ ବନ୍ଦୀ ହେଲେ । ବିନା ସୈନ୍ୟରେ କେନ୍ଦୁଝର ଗଡ଼ରେ ପ୍ରବେଶ କରିବା ଅସମ୍ଭବ ବୋଲି ଉଲ୍ଲେଖ କରାଯାଇଛି । ପ୍ରଜାମାନେ ରଜାଙ୍କୁ ସ୍ୱୀକାର କରୁ ନାହାନ୍ତି । ଏହି ଆନ୍ଦୋଳନର ନେତା ହେଉଛନ୍ତି ଧରଣୀଧର ନାୟକ । ( ୮ )

## ବିଦ୍ରୋହୀ ନେତା ଧରଣୀଧର :

କେନ୍ଦୁଝର ଅଶାନ୍ତିକୁ ବ୍ୟାସକବି ଫକୀରମୋହନ 'ମେଳି' ନାମରେ ଆଖ୍ୟାତ କରି ଯେତେ ହୀନତର କରିଥାଆନ୍ତୁ ନା କାହିଁକି, ଏ କଥା ସତ୍ୟ ଯେ ତାହା ଏକ ପ୍ରକୃଷ୍ଟ ଜନ ଆନ୍ଦୋଳନ ଥିଲା । ସେହି ଆନ୍ଦୋଳନର କେବଳ ମୁଖପାତ୍ର ଥିଲେ ଧରଣୀଧର ନାୟକ । ତାଙ୍କୁ ମେଳିଆ ଭାବରେ ଚିତ୍ରଣ କରି କେବଳ ବ୍ୟକ୍ତିଗତ ସ୍ୱାର୍ଥ ପାଇଁ ଅଶିକ୍ଷିତ ସରଳ ଭୂୟାଁମାନଙ୍କୁ ରାଜାଙ୍କ ବିରୁଦ୍ଧରେ ମତାଇ ଦିଆଯାଇ ଥିଲା ବୋଲି ଫକୀରମୋହନ ମତ ପ୍ରକାଶ କରୁଛନ୍ତି । ମାତ୍ର ଏଭଳି ମତ ଯେ ଅମୂଳକ, ଏହା ଅବଲମ୍ବେ ପ୍ରମାଣିତ ହୋଇ ପାରିବ । ବିଦ୍ରୋହ ଅଥବା ବିପ୍ଳବ କେବଳ ଧରଣୀଧରଙ୍କ ବ୍ୟକ୍ତିଗତ ସ୍ୱାର୍ଥରୁ ଆରମ୍ଭ ହୋଇଥିଲେ ତାଙ୍କର ଆତ୍ମ ସମର୍ପଣ ପରେ ଅତି ସହଜରେ ବିଦ୍ରୋହ ଦମନ ହୋଇଯାଇ ପାରିଥାଆନ୍ତା । ମାତ୍ର ଧରଣୀ ବନ୍ଦୀ ହେଲା ପରେ ମଧ୍ୟ ବର୍ଷାଧିକ କାଳ ଯାଏ ବିଦ୍ରୋହ ଅଗ୍ନି ପ୍ରଜ୍ୱଳିତ ହୋଇ ରହିଲା ଏବଂ ଇଂରେଜ ସେନା ବାହିନୀର ନାନା ଅତ୍ୟାଚାର ସହ୍ୟକରି ମଧ୍ୟ ଭୂୟାଁ ଜାତି

୮—ଉତ୍କଳ ଓ ନବ ସମ୍ବାଦ — ୪ । ୬ । ୧୮୯୧

ଯେ ରାଜାର କବଳରୁ ସ୍ୱାଧୀନତା ପାଇଁ ଲଢ଼ାଇ କରୁଥିଲେ, ଏଥିରୁ ଆନ୍ଦୋଳନର ବ୍ୟାପକତା ଲକ୍ଷ୍ୟ କରିବାକୁ ହେବ । ମାତ୍ର ଫକୀରମୋହନ ଧରଣୀ ଚରିତ୍ରର ବୈଶିଷ୍ଟ୍ୟ ଆଦୌ ଦେଖି ପାରି ନାହାନ୍ତି । ବରଂ ସେ ରାଜା ଅନ୍ନରେ ପ୍ରତିପାଳିତ ହୋଇ ରାଜାଙ୍କ ବିରୁଦ୍ଧରେ ବିଦ୍ରୋହ କରିଛି ବୋଲି ଲେଖକ ପରୋକ୍ଷରେ କଟାକ୍ଷ କରିଛନ୍ତି । ଫକୀରମୋହନ ଲେଖିଛନ୍ତି—"ମେଳିର ସର୍ଦ୍ଦାର ହେଲେ ଧରଣୀଧର । ଧରଣୀଧର ଗୋଟିଏ ଭୂୟାଁ ପିଲା । ମହାରାଜା ଧନୁର୍ଜୟ ନାରାୟଣ ଭଞ୍ଜଦେବ ତାହାକୁ କଟକ ପଠାଇ ସର୍ଭେ ପଢ଼ାଇଥିଲେ । ମହାରାଜାଙ୍କ ଖରଚରେ କଟକସ୍ଥ କେଉଁଝର ବସାରେ ରହି ସର୍ଭେ ସ୍କୁଲରେ ପଢୁଥିଲା । ସ୍କୁଲରୁ ପାସ କରି ଆସି କେଉଁଝର ରାଜା ସରକାରରେ କେତେକ ମାସ ସର୍ଭେୟର କାର୍ଯ୍ୟ କରିବା ଉପରେ ପ୍ରଚାର କରିଦେଲା—ମହାରାଜା ପ୍ରଜାପୀଡ଼କ, ଅତ୍ୟାଚାରୀ । ସେ ( ଧରଣୀ ) କଟକରୁ ମହାରାଣୀଙ୍କ ଧର୍ମପୁତ୍ର ହୋଇ ଆସିଛି, ରାଜ୍ୟରେ ନ୍ୟାୟ ବିଚାର କରିବ । ଭୂୟାଁ ପ୍ରଜାଗଣ ମହାରାଜାଙ୍କ ପ୍ରତି ଅସନ୍ତୁଷ୍ଟ ଥିଲେ । ଧରଣୀ ଏହି କଥା ପ୍ରକାଶ କରନ୍ତା ମାତ୍ରକେ ସମସ୍ତେ ତାର ବଶ୍ୟତା ସ୍ୱୀକାର କରି ରାଜଶକ୍ତିକୁ ଅମାନ୍ୟ କରିବାକୁ ଲାଗିଲେ । ଧରଣୀର ଆଦେଶ ଲଂଘନ କାରଣ ଅନ୍ୟ-ଜାତୀୟ ପ୍ରଜାଙ୍କର ଏବଂ ରାଜାଙ୍କ ଖମାରଘର ଲୁଟତରାଜ ହେବାକୁ ଲାଗିଲା; କେତେଜଣ ପୁଲିସ କର୍ମଚାରୀଙ୍କୁ ଧରି ନେଇଯାଇ କଏଦ କରି ରଖିଲେ । ସିଂହଭୂମି ତରଫରୁ ମହାପାତ୍ର ନାମକ ଗୋଟାଏ ଭୂୟାଁ ଆସି ଧରଣୀ ସହିତ ଯୋଗଦେଲା । ଏ ଲୋକଟା ବୁଦ୍ଧିମାନ, ମାଲମୋକଦ୍ଦମାର ଅବସ୍ଥା ବୁଝେ । ମେଳିର ପ୍ରାବଲ୍ୟ ଦେଖି ମହାରାଜା ନିଜରାଜ୍ୟ ପରିତ୍ୟାଗ କରିଥିଲେ" । (୯)

୯—ଆତ୍ମଚରିତ—ପ୍ରଥମସଂସ୍କରଣ ୧୯୨୭-ପୃ ୧୨୯

ଫକୀରମୋହନ ଧରଣୀଧରଙ୍କୁ ଏକ ଧୂର୍ତ୍ତ, ପ୍ରବଞ୍ଚକ ଏବଂ ପ୍ରତାରକ ଭାବରେ ଚିତ୍ରଣ କରିଛନ୍ତି । ଫକୀରମୋହନଙ୍କ ପ୍ରଚାର ଫଳରେ ଓଡ଼ିଆ ପାଠକ ସମାଜ ଆଜି ପର୍ଯ୍ୟନ୍ତ ତାହାହିଁ ବିଶ୍ୱାସ କରି ଆସି ଅଛନ୍ତି । ମାତ୍ର ଏହା ସତ୍ୟର ଅପଲାପ ମାତ୍ର । ବରଂ ଧରଣୀଧର ପ୍ରଜାପୀଡ଼ିତ ଅତ୍ୟାଚାରୀ ରାଜାଙ୍କ କବଳରୁ ଭୂୟାଁ ପ୍ରଜାମାନଙ୍କୁ ଉଦ୍ଧାର କରିବାପାଇଁ ୧୮୯୧ ସାଲରେ କମିସନର ସାହେବଙ୍କୁ ଆପତ୍ତି ଜଣାଇଥିଲେ । ମାତ୍ର ଇଂରେଜ ଶାସକଗଣ ସେଥିରେ କୌଣସି କର୍ଣ୍ଣପାତ ନକରିବାରୁ ସେ ଭୂୟାଁ ପ୍ରଜାମାନଙ୍କ ନେତୃତ୍ୱ ଗ୍ରହଣ କରି ବିଦ୍ରୋହ ଘୋଷଣା କରିଥିଲେ । ଏହି ବିଦ୍ରୋହରେ ତାହାର ଶ୍ୟାଳକ ନରେନ୍ଦ୍ର ମହାପାତ୍ର ସାହାଯ୍ୟକାରୀ ହେବା ସ୍ୱାଭାବିକ । ଫକୀରମୋହନ ନିଜର ଆତ୍ମଚରିତରେ ମେଳଦମନ କରିବାର ଗୌରବ ନେଇଥିବାରୁ କଥିତ ମେଳର ନେତା ଧରଣୀଧରଙ୍କୁ ସେ ହୀନ ଭାବରେ ଚିତ୍ରଣ କରିବାକୁ କୁଣ୍ଠିତ ହୋଇନାହାନ୍ତି । ମାତ୍ର ଧରଣୀର ବ୍ୟକ୍ତିତ୍ୱ ଏବଂ ଆଦର୍ଶ ସଂପର୍କରେ ତତ୍କାଳୀନ ଇଂରେଜ ଶାସକବର୍ଗ ଏବଂ ସଂବାଦପତ୍ରଗଣ ଆଦୌ ଅଜ୍ଞ ନଥିଲେ । ଧରଣୀଧର ବନ୍ଦୀ ହେଲା ପରେ କେନ୍ଦୁଝରରେ ଶାନ୍ତି ବିରାଜମାନ କଲା ବୋଲି ଫକୀରମୋହନଙ୍କ ଲେଖାରୁ ଜଣାପଡ଼େ । ମାତ୍ର ଧରଣୀ ଆତ୍ମସମର୍ପଣ କଲାପରେ ମଧ୍ୟ କେନ୍ଦୁଝର ବିଦ୍ରୋହ ପ୍ରଶମିତ ହୋଇ ନଥିଲା । ଧରଣୀ ନିଜେ ବନ୍ଦୀ ହେଲେ ମଧ୍ୟ ଯେଉଁ ଉଦ୍ଦେଶ୍ୟରେ ସେ ସଂଗ୍ରାମ ଆରମ୍ଭ କରିଥିଲା, ତାହା କେତେକାଂଶରେ ସଫଳ ହୋଇଥିଲା ଏବଂ ଇଂରେଜ ଶାସକବର୍ଗ କେନ୍ଦୁଝର ରାଜାଙ୍କୁ କ୍ଷମତାଚ୍ୟୁତ କରିବାକୁ ବାଧ୍ୟ ହୋଇଥିଲେ । ଅଇନଗତ କାରଣରୁ ଧରଣୀଧର ଦଣ୍ଡିତ ହୋଇଥିଲେ ହେଁ

ତାହାଙ୍କୁ କ୍ଷମା ଦେବାପାଇଁ ଇଂରେଜ କର୍ମଚାରୀଗଣ ଅନୁଭବ କରିଥିଲେ ।

## ବିପ୍ଳବୀ ଧରଣୀଧରଙ୍କର ଆତ୍ମସମର୍ପଣ :

ଅବସ୍ଥା ଚକ୍ରର ପ୍ରବଳ ପରିହାସ ଏବଂ ସୁଶିକ୍ଷିତ ଇଂରେଜ ସେନା ବାହିନୀ ସମ୍ମୁଖରେ ଧରଣୀଧର ଅଧିକକାଳ ତିଷ୍ଠିବା ଅସମ୍ଭବ ଥିଲା । ତେଣୁ ସେ ଅଳ୍ପକାଳ ମଧ୍ୟରେ ଆତ୍ମସମର୍ପଣ କରିବାରୁ କେନ୍ଦୁଝରରେ ଶାନ୍ତି ପ୍ରତିଷ୍ଠା ହେଲା ବୋଲି ସରକାର ମନେ କରିଥିଲେ ( ୧୦ ) କେନ୍ଦୁଝରରେ ବିଦ୍ରୋହର ପରିସ୍ଥିତି ସମ୍ପର୍କରେ 'ନବସମ୍ବାଦ' ଯେଉଁ ସମ୍ବାଦ ପରିବେଷଣ କରିଥିଲେ, ତହିଁରୁ ଜଣାଯାଏ ଯେ କେନ୍ଦୁଝର ରାଜା ଅତ୍ୟାଚାରୀ ବୋଲି ଇଂରେଜ ଶାସକମାନଙ୍କର ହୃଦ୍‌ବୋଧ ହୋଇଥିଲା । ରାଜାଙ୍କ ଅତ୍ୟାଚାର ହେତୁ ରାଜ୍ୟରେ ଅଶାନ୍ତି ଦେଖା ଦେଇଥିଲା । ମହାରାଜା ଆପଣା ସୁଖ ସ୍ୱଚ୍ଛଳତା ପ୍ରତି ଯେପରି ଦୃଷ୍ଟି ରଖିଥିଲେ, ସେହିପରି ପ୍ରଜାଙ୍କ ସୁଖ ସ୍ୱଚ୍ଛନ୍ଦତା ପ୍ରତି ଟିକିଏ ଦୃଷ୍ଟି ରଖିଥିଲେ ଏ ପ୍ରକାର ଘଟଣା ଆଦୌ ଘଟି ନଥାନ୍ତା । ବରଂ ଏହି ବିଦ୍ରୋହରେ ଜନତା ଧରଣୀଧରଙ୍କର ଉଦ୍ଦେଶ୍ୟ ଅତ୍ୟନ୍ତ ଭଲଥିଲା । ସେ ପ୍ରଜାଙ୍କ ହିତ ନିମନ୍ତେ ଯାହାକିଛି କରିଥିଲେ । ଗଡ଼ଜାତ ସୁପରିଣ୍ଟେଣ୍ଡେଣ୍ଟଙ୍କ ବିଚାର ଅନୁଯାୟୀ ମହାରାଜା କିଛିକାଳ ଶାସନ ଭାରରୁ ବଞ୍ଚିତ ହୋଇ କଟକରେ ଅବସ୍ଥାନ କରିବେ ବୋଲି ଆଦେଶ ହୋଇଥିଲା । ଦୋଷକୁ ଚାହିଁ ଧରଣୀଧରଙ୍କର ଦଣ୍ଡ କିଛି ଅଧିକ ହୋଇଗଲା ବୋଲି ଅନୁଭୂତ ହେଲା । 'ଦୀପିକା' ପ୍ରକାଶିତ ସମ୍ବାଦରୁ ଜଣାଯାଏ ଯେ ଗଡ଼ଜାତ ସୁପରିଣ୍ଟେଣ୍ଡେଣ୍ଟ ଟେଏନଙ୍କ

୧୦—ଓଡ଼ିଆ ଓ ନବସମ୍ବାଦ—୧୦ ଜାନୁ ୧୮୯୧

ସାହେବ ମହୋଦୟ ଧରଣୀଧର ପ୍ରତି କଠିନ ଦଣ୍ଡ ଦେବାକୁ ଆଦୌ ଇଚ୍ଛୁକ ନୁହଁନ୍ତି । ସାହେବ ମହୋଦୟଙ୍କ ଇଚ୍ଛା ଯେ କେଉଁଝରରେ ଶାନ୍ତି ସ୍ଥାପନ ହେଲା ଉତ୍ତାରୁ ତାହାଠାରୁ ଭବିଷ୍ୟତ ସଚ୍ଚରିତ୍ର ପତ୍ର ଲେଖିଦେଇ ତାହାକୁ କ୍ଷମାଦେବାପାଇଁ ଗଭର୍ଣ୍ଣମେଣ୍ଟକୁ ଅନୁରୋଧ କରିବେ । ( ୧୧ ) ପ୍ରାୟ ଏକବର୍ଷ ପରେ କେଉଁଝରରେ ଶାନ୍ତି ପ୍ରତିଷ୍ଠା ପାଇଁ କେତେକ ଗୁରୁତ୍ୱ ପୂର୍ଣ୍ଣ ନିଯୁକ୍ତି ମଧ୍ୟ କରାଯାଉ-ଥିଲା । ରାୟ ନନ୍ଦକିଶୋର ଦାସ ବାହାଦୁର କେଉଁଝରର ପଲିଟି-କେଲ୍ ଏଜେଣ୍ଟ ହେଲେ । ମହାରାଜା ଆପଣା ରାଜ୍ୟରେ ରହି ତାଙ୍କର ପରାମର୍ଶ ଅନୁସାରେ କାର୍ଯ୍ୟପରିଚାଳନା କରିବେ ବୋଲି ନିଷ୍ପତ୍ତି ହେଲା । ଓ୍ୟାଇଲି ସାହେବ ଏବଂ ଫକୀରମୋହନ କେଉଁଝରରୁ ବିଦାୟ ନେଲେ ।

## ପୁନର୍ବାର ବିଦ୍ରୋହ :

ରାଜା ପୁନର୍ବାର ରାଜ୍ୟକୁ ଫେରି ଆସିବାରୁ ଭୂୟାଁ ପ୍ରଜାମାନେ ଅସନ୍ତୁଷ୍ଟ ହେଲେ । ସେମାନଙ୍କ ନ୍ୟାଯ୍ୟଦାବୀ ପ୍ରତ୍ୟାଖ୍ୟାନ ହେଲା-ବୋଲି ପ୍ରଜାମାନେ ମନେ କରିବା ସ୍ୱାଭାବିକ । ତେଣୁ ବିପ୍ଳବର ପ୍ରଥମ ନେତା ଧରଣୀଧର ବନ୍ଦୀଶାଳାରେ ଥିଲେ ମଧ୍ୟ ବିପ୍ଳବ ସରି ପାରି ନଥିଲା । ପୁନର୍ବାର କର ଇତ୍ୟାଦି ନଦେଇ ସେମାନେ ରାଜାଙ୍କର ଅଧିକାରକୁ ଅସ୍ୱୀକାର କଲେ । ଗୋଳମାଳ ପ୍ରବଳ ହେବାରୁ ବାଧ୍ୟରୁ କମିସନର ସାହେବ କେତେକ ସୈନ୍ୟ ସହ କେଉଁଝରରେ ଉପସ୍ଥିତ ହୋଇଥିଲେ । ( ୧୨ ) ନିଜେ କମିସନର

---

୧୧ — ଉତ୍କଳ ଓ ନବସମ୍ବାଦ- ୨୨-୭-୧୮୯୧

୧୨ — ଉତ୍କଳ ଓ ନବସମ୍ବାଦ- ୨ । ୧ । ୧୮୯୨

ସୈନ୍ୟସହ ମେଲି ଦମନପାଇଁ ଉପସ୍ଥିତ ହେବାରୁ ପ୍ରଜା ଅନ୍ଦୋଳନର ଗୁରୁତ୍ୱ ଅନୁମାନ କରାଯାଇପାରେ । ସୈନ୍ୟମାନଙ୍କ ସାହାଯ୍ୟରେ ଭୂୟାଁ ପ୍ରଜାମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରାଯାଇଥିଲା । ଅନେକ ଭୂୟାଁ ଗ୍ରାମରେ ନିଆଁ ଲଗାଇ ପୋଡି ଦିଆଗଲା । ଅତ୍ୟାଚାର ଭୟରେ ଅନେକ ଭୂୟାଁ ଆପଣାଃ ଆପଣା ଜଣଣା ଦେଇ ଆତ୍ମ ସମର୍ପଣ କରିଥିଲେହେଁ ବିଦ୍ରୋହୀ ଦଳପତି ମାନେ ଆତ୍ମ ଗୋପନ କରି ରହିଥିଲେ । ( ୧୩ ) ପରି-ଶେଷରେ ଇଂରେଜ ଶାସକଗଣ ପ୍ରତ୍ୟେକ ବିଦ୍ରୋହୀ ଦଳପତିଙ୍କୁ ଧରିଇଦେଲେ ହେଟଙ୍କା ଲେଖାଏଁ ପୁରସ୍କାର ମିଳିବ ବୋଲି ଘୋଷଣା କଲେ । ସୁପରିଣ୍ଟେଣ୍ଡେଣ୍ଟ କୁକ୍ ସାହେବ ଏବଂ ରାୟ ବାହାଦୂର ନନ୍ଦକିଶୋର ଦୁଇଦଳ ସୈନ୍ୟଙ୍କ ନେତୃତ୍ୱ ନେଇ ଦୁଇଦିଗରୁ କେଉଁଝର ରାଜ୍ୟରେ ଆକ୍ରମଣ ଚଳାଇଲେ । ମେଳିଆ-ମାନଙ୍କୁ ସନ୍ତୁଷ୍ଟ କରିବାପାଇଁ ସେମାନଙ୍କ ନିକଟ ଖାଦ୍ୟଶସ୍ୟ ଫେରାଇ ଦେଲେ । ଅତ୍ୟାଚାର ଏଡ଼ିବା ପାଇଁ ଭୂୟାଁମାନେ ଗାଁ ଛାଡ଼ି ଗୁଡ଼ ପିଲାପିଲିଙ୍କୁ ନେଇ ଦୁର୍ଗମ ପାହାଡ଼ ଉପରକୁ ପଳାଇ ଗଲେ । ( ୧୪ ) ରାଜାଙ୍କର ବଶ୍ୟତା ସ୍ୱୀକାର କରିବେ ନାହିଁ ବୋଲି ଭୂୟାଁମାନେ ପଣ କରିଥିଲେ । ତେଣୁ ସେମାନେ ମଧ୍ୟ ପାର୍ବତ୍ୟ ପ୍ରଦେଶରେ ଲୁଟ ତରାଜ କରୁଥିଲେ । ହଜାର ହଜାର ପ୍ରଜା ମୟୂରଭଞ୍ଜ ରାଜା ଅଧୀନରେ ପ୍ରଜା ହୋଇ ରହିବେ । ବୋଲି ଆବେଦନ ମଧ୍ୟ କରିଥିଲେ । ଏହି ମେଳିଆଙ୍କ ମଧ୍ୟରେ ପ୍ରଧାନ ନେତା ଥିଲେ ଭୂଜବଳ, ଗୋପାଳ, ରୁଞ୍ଜୀ, ଆଗୁଆଣ ସିଂହ ପ୍ରଭୃତି । ଧରଣୀଧରଙ୍କ ପରେ ଏମାନେ ଭୂୟାଁଙ୍କର ଦମନଲୀଳା

---

୧୩ — ଓଡ଼ିଆ ଓ ନବସମ୍ବାଦ—୨୧ । ୧ । ୧୮୯୩
୧୪ — ଓଡ଼ିଆ ଓ ନବସମ୍ବାଦ—୨୫ । ୧ । ୧୮୯୩

ଚଳାଇ ବିଦ୍ରୋହକୁ ବଞ୍ଚାଇ ରଖିଥିଲେ । ମାତ୍ର ଅଧିକ ସୈନ୍ୟ ମୁତୟନ ସଙ୍ଗେ ସଙ୍ଗେ କେଉଁଝରର କୁଆଁର, ଝୁରମୁଣ୍ଡା, ନୂଆ-କୋଟ, ନୂଆଗଡ଼, ଚମକପୁର, ଗୁଆଲି, କାଳକା ପ୍ରସାଦ ଏବଂ ବାଞ୍ଜିଶୁଳ ପ୍ରଭୃତି ସ୍ଥାନରେ ନୂତନ ଫାଣ୍ଡି ପ୍ରତିଷ୍ଠା କରାଯାଇ ବିଦ୍ରୋହ ଦମନ ପାଇଁ ଅଧିକ ଫଳପ୍ରସୂ ଉଦ୍ୟମ କରାଗଲା । ମେଳି ଦମନ କରିବାରେ ବିଫଳ ହେବାରୁ ଶେଷରେ ନନ୍ଦକିଶୋର ବାବୁଙ୍କୁ ମଧ୍ୟ ରାଜ୍ୟରୁ ବିଦାୟ ନେବାକୁ ପଡ଼ିଲା । ଏଚ ପି, ଓ୍ୟାଲି ସାହେବ ତାଙ୍କ କାର୍ଯ୍ୟରେ ମୁତୟନ ହେଲେ । ( ୧୮ )

କୌଣସି ବଳ ପ୍ରୟୋଗ ନ କରି ବିଦ୍ରୋହ ଦମନ କରିବାକୁ ଲାଟ ସାହେବ ଓ୍ୟାଲି ସାହେବଙ୍କୁ ନିର୍ଦ୍ଦେଶ ଦେଇଥିଲେ । ତାଙ୍କର ଯତ୍ନରେ ପ୍ରଜାମାନଙ୍କର ଦାବୀ ସ୍ୱୀକୃତ ହେଲା ଏବଂ ରାଜ୍ୟରେ କ୍ରମଶଃ ଶାନ୍ତି ପ୍ରତିଷ୍ଠା ହୋଇଥିଲା । ପୂର୍ବ ପ୍ରଚଳିତ ନିୟମ ଅନୁସାରେ ପ୍ରଜାମାନେ ରାଜାଙ୍କର ମାଗଣାରେ ବେଠି କରିବା କଥା । ମାତ୍ର ସେମାନେ ଅସ୍ୱୀକାର କରିବାରୁ ରାଜା ବଳ ପ୍ରୟୋଗ କଲେ । ତେଣୁ ପୁନର୍ବାର ବିଦ୍ରୋହ ହେବାର ଆଶଙ୍କା ଥିଲା । ମାତ୍ର ସରକାରୀ ପ୍ରତିନିଧି ଓ୍ୟାଲି ସାହେବଙ୍କ ଉଦ୍ଦେଶ୍ୟ ଅନୁସାରେ ରାଜା ଏବଂ ପ୍ରଜାଙ୍କ ମଧ୍ୟରେ ଏକ ରାଜିନାମା ସମ୍ଭବ ହୋଇଥିଲା । ଫଳରେ ଭୂୟାଁମାନେ ସେମାନଙ୍କର କାର୍ଯ୍ୟ ପାଇଁ ଉପଯୁକ୍ତ ପାରିଶ୍ରମିକ ପାଇବେ ବୋଲି ସ୍ୱୀକୃତ ହେଲା । ଉଭୟ ପକ୍ଷଙ୍କ ସମ୍ମତିକ୍ରମେ ଧାର୍ଯ୍ୟ ହେଲା ଯେ ଭୂୟାଁମାନେ ପ୍ରତିହଳ ସକାଶେ ତିନିଅଣା ଏବଂ ଗୃହ ମରାମତି ସକାଶେ ମଜୁରୀ ଦେଉଥିଲା

---

୧୦—ଉଡ଼ିଆ ଓ ନବସମ୍ବାଦ—୨୩ । ୮ । ୧୮୯୩

ଲେଖାଏଁ ପାଇବେ । ସେହି ଦିନଠାରୁ ଭୂୟାଁମାନେ ପୁନର୍ବାର ରଜାଙ୍କ ବଶ୍ୟତା ସ୍ୱୀକାର କଲେ । (୧୭)

ଊନବିଂଶ ଶତାବ୍ଦୀର ଶେଷଭାଗରେ ଭାରତ ବର୍ଷରେ ଜାତୀୟ ଆନ୍ଦୋଳନ ପ୍ରତିପ୍ରାପ୍ତ ମନେ ହେଉଥିଲାବେଳେ ଗଡଜାତ ଅଞ୍ଚଳର ଅନ୍ଧାରି ଶାସନ ତଳେ ଆତ୍ମସମ୍ମାନ ଏବଂ ନ୍ୟାଯ୍ୟ ଅଧିକାର ଦାବୀ କରି ଅମାନୁଷିକ ଅତ୍ୟାଚାର ବିରୁଦ୍ଧରେ ଯେଉଁ ବୀର ପୁରୁଷ ପ୍ରଥମେ ଚେତାବନୀ ଦେଇଥିଲେ, ସେହି ଧରଣୀଧର ଆଜି ଇତିହାସ ପୃଷ୍ଠାରେ ବିସ୍ମୃତପ୍ରାୟ ଏବଂ ସେନାପତିଙ୍କ ଲେଖାରେ ଜଣେ ସାଧାରଣ ସ୍ୱାର୍ଥପର ମେଲିଆ ବୋଲି ଚିତ୍ରିତ । ଯଦି ଏ ଦେଶର ଜନଆନ୍ଦୋଳନର ପ୍ରକୃତ ଇତିହାସ ଲିପିବଦ୍ଧ ହେଲେ ଧରଣୀଧର ଜଣେ ଉଚ୍ଚକୋଟୀର ସାହସୀ ଜାତୀୟ ବୀର ଭାବରେ ଯେ ପ୍ରତିଷ୍ଠା ଲାଭ କରିବେ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।

———

୧୭ - ଓଡ଼ିଆ ଓ ନବ ସମ୍ବାଦ-୧୮ । ୭ । ୧୮୯୩

# ପତ୍ରାବଳୀରେ ମେହେର–ମାନସ

କାବ୍ୟ କବିତାର ଆଲୋଚନା ମାଧ୍ୟମରେ ସାଧାରଣ ଲୋକେ କବିଙ୍କୁ ଚିହ୍ନିବାକୁ ଚେଷ୍ଟା କରନ୍ତି । ମାତ୍ର ସେ କ'ଣ ଧରି ପାରନ୍ତି !! କବିଙ୍କର ସମଗ୍ର କାବ୍ୟ-ସମ୍ଭାର ପରିଭ୍ରମଣ ନ କଲେ ତାଙ୍କ ସଂପର୍କରେ ସ୍ପଷ୍ଟ ଧାରଣା କରିବା ସହଜ ନୁହେଁ । କାବ୍ୟ କବିତାର ରସାନୁଭୂତିରେ ଆଲୋଚକ ତନ୍ମୟ ହୁଏ ସତ, ସେ କବିର ଜୀବନୀ ଜାଣିବାପାଇଁ ବିଶେଷ ଆଗ୍ରହୀ ହୁଏ ନାହିଁ । କେତେକଙ୍କ ଧାରଣା ଯେ ରସାନୁଭୂତି ଯଦି କାବ୍ୟ କବିତାର ପ୍ରକୃତ ଉଦ୍ଦେଶ୍ୟ ହୁଏ ତେବେ ପାଠକ ସେଥିରେ ତାର ଲକ୍ଷ୍ୟ ସୀମିତ ରଖିବା ଉଚିତ । ମାତ୍ର କବିଙ୍କର ଜୀବନୀ ଏବଂ ସମସାମୟିକ ସାମାଜିକ ଜୀବନ ସଂପର୍କରେ ବିଷଦ ଆଲୋଚନା ନକଲେ ଆଲୋଚକ କବିଙ୍କର ରଚନାର ଉପଯୁକ୍ତ ମହତ୍ତ୍ୱ ଉପଲବ୍ଧି କରି ପାରିବେ ନାହିଁ । କବିଙ୍କର ବିଷୟ ପରିବେଷଣ ଏବଂ ଜୀବନର ଆଦର୍ଶକୁ ମଧ୍ୟ ଉପଯୁକ୍ତ ବିଚାର ଦେଇପାରିବେ ନାହିଁ । ସେହି କାରଣରୁ ସାହିତ୍ୟର ଆଲୋଚନା ସହିତ ସମକାଳୀନ ଇତିହାସ, ରାଜନୀତି ଓ ସାମାଜିକ ଜୀବନର ମୂଲ୍ୟବୋଧ ବିଚାର କରାଯାଇଥାଏ । ତେବେ ଓଡ଼ିଆ ସାହିତ୍ୟର ଅଥବା ସାମାଜିକ ଜୀବନର ଇତିହାସ ବୈଜ୍ଞାନିକ

ଭିତ୍ତିରେ ଆଜି ପର୍ଯ୍ୟନ୍ତ ରଚିତ ହୋଇ ନ ଥିବାରୁ ସାହିତ୍ୟର ଯୁଗନିର୍ଣ୍ଣୟ କଲାବେଳେ ଯେପରି ଅନୁମାନର ଆଶ୍ରୟ ଗ୍ରହଣ କରିବାକୁ ହୋଇଥାଏ, ସେହିପରି ପ୍ରାଚୀନ କବିମାନଙ୍କ ମଧ୍ୟରୁ ଅନେକଙ୍କ ଜୀବନୀ ସଂପର୍କରେ ପ୍ରକୃତ ପରିଚୟ ମିଳୁ ନଥିବାରୁ ଆଲୋଚନା କ୍ଷେତ୍ରରେ ବହୁତ ବିଭ୍ରାଟ ଦେଖାଦେଇଥାଏ । ଅବଶ୍ୟ ଆଧୁନିକ ଯୁଗର କବିମାନଙ୍କ ସମ୍ପର୍କରେ ଏ ଯୁକ୍ତି ଗ୍ରହଣୀୟ ନୁହେଁ । କାରଣ ଆଧୁନିକ ଯୁଗ ସଂପର୍କରେ ଜାଣିବା ପାଇଁ ବହୁତ ଉଦ୍ୟମ ହେଉଅଛି ।

ସାହିତ୍ୟ ହେଉଛି କବି ଜୀବନର ମୁକୁର । ତାଙ୍କର ସମାଜଚେତନା ଏବଂ ଜୀବନାଦର୍ଶ ତାଙ୍କର ରଚନାରେ ପ୍ରତି-ଫଳିତ ହେବା ସ୍ୱାଭାବିକ । ସାହିତ୍ୟର ସାଧାରଣ ଆଲୋଚନାରେ କାବ୍ୟର ବିଷୟବସ୍ତୁ, ଚରିତ୍ରଚିତ୍ରଣ, ରସର ପରିବେଷଣ, କବିଙ୍କର ଧର୍ମମତ, ରଚନାଶୈଳୀ ଇତ୍ୟାଦି ସମ୍ପର୍କରେ ଅଧିକ ଧ୍ୟାନ ଦିଆଯାଇଥାଏ । ମାତ୍ର ଯେଉଁ କବି ପାଠକର ଉଦ୍ଦେଶ୍ୟରେ ସତ୍ୟ ଶିବ-ସୁନ୍ଦରର ବାଣୀ ପରିବେଷଣ କରନ୍ତି, ତାଙ୍କର ବ୍ୟକ୍ତିଗତ ଜୀବନୀ ପ୍ରତି କେହି କ'ଣ କେବେ ଆକୃଷ୍ଟ ହୁଏ ? କବିମାନେ ସ୍ୱପ୍ନ ବିଳାସୀ ସତ, ମାତ୍ର ସେମାନେ ଏହି ମାଟିଗୋଡ଼ି ଧରାରେ ବିଚରଣ କରନ୍ତି । ତେଲ ଲୁଣର ସଂସାରରେ ଜୀବନ ସଂଗ୍ରାମରେ ଉପନୀତ ହୁଅନ୍ତି । ତେଣୁ ସେମାନଙ୍କର ଅସାଧାରଣ ମନ ଥାଇ ମଧ୍ୟ ଅତି ସାଧାରଣଙ୍କ ଭଳି ଜୀବନଯାପନ କରନ୍ତି । ସାଧାରଣ ଜୀବନର ଆଶା ନୈରାଶ୍ୟ, ସୁଖ ଦୁଃଖ, ଘାତପ୍ରତିଘାତ ସେମାନଙ୍କ ଜୀବନରେ ଜାତ ହୁଏ । ସେହି ଆଶା ଓ ନିରାଶାର ଦ୍ୱନ୍ଦ୍ୱାତ୍ମକ ମାୟାରେ ଉଠିବେଇ ବୁଡ଼ିବେଇ ହୋଇ କିପରି ସେମାନଙ୍କର ସାହିତ୍ୟିକ

ସାଧନା, କଳାଇ ସାର୍ଥିକ ପ୍ରେରଣା ମି,ସ୍ତମାଣ ! ! କବି-ଜୀବନର ସାଧନାକୁ ଅଲୋଚକ ସେଷ୍ଟଭାବରେ ଅତ୍ୟନ୍ତ ଉଦାରଭାବରେ ଗ୍ରହଣ କରେ । ଜୀବନସଂଗ୍ରାମରେ କ୍ଷତବିକ୍ଷତ ସେହି ଅସୁନ୍ଦର ମଣିଷର ମନରେ କପରି ଯେ କଳ୍ପନାର ଜାଡ଼ିଗୁ ଫୁଟେ, ଅମୃତର ଧାରା ଝରିପଡ଼େ, ପ୍ରେରଣାର ଜ୍ୱାଳାମୟୀ ସଙ୍ଗୀତ ପ୍ରତିଧ୍ୱନିତ ହୁଏ, ସେ କଥା ସେ ଭାବରେ ବିସ୍ମିତ ହୋଇପଡ଼େ । ସେଥିପାଇଁ ଏ ପ୍ରସଙ୍ଗରେ କବିଙ୍କର ହାତଲେଖା ଜୀବନ କାହାଣୀ କିମ୍ୱା ତାଙ୍କ ସୁଖଦୁଃଖ ସଂସାରର ସାକ୍ଷୀ ହାତଲେଖା ପତ୍ରଗୁଡିକ ଅଧିକ ପ୍ରେରଣା ଯୋଗାଇଥାଆନ୍ତି । ପ୍ରାଚୀନ ଓଡ଼ିଆ ସାହିତ୍ୟରେ କୌଣସି ଲେଖକ ନିଜର ଆତ୍ମଜୀବନୀ ପ୍ରାଞ୍ଜଳ ଭାବରେ ଲେଖିଯାଇନାହାନ୍ତି । କାରଣ ତାହା ସେକାଳର ଅନୁସୃତ ମତ ନଥିଲା । ଆଧୁନିକ ଯୁଗରେ ମଧ୍ୟ ବ୍ୟାସକବି ଫକୀରମୋହନଙ୍କୁ ଛାଡିଦେଲେ ଆଉ କୌଣସି ଲେଖକ ତାଙ୍କର ପୂର୍ଣ୍ଣାଙ୍ଗ ଜୀବନଚରିତ ଲେଖି ଯାଇନାହାନ୍ତି । ଏଇ ଯୁଗରେ ଯେଉଁ କେତେଜଣଙ୍କର ଆତ୍ମଜୀବନୀ ପ୍ରକାଶିତ ହୋଇଛି, ସେମାନେ ଲେଖକ ହୋଇଥାଇପାରନ୍ତି, ମାତ୍ର ରାଜନୀତି ଏବଂ ସାମାଜିକ ଜୀବନରେ ସେମାନଙ୍କର ପ୍ରତିଷ୍ଠା ଯୋଗୁଁ ସେହି ଆତ୍ମଜୀବନୀର ମହତ୍ତ୍ୱ ବୃଦ୍ଧିଲାଭ କରିଅଛି । ଆଧୁନିକ ଯୁଗର କବିମାନଙ୍କ ମଧ୍ୟରେ ଫକୀରମୋହନଙ୍କ ପରେ କେବଳ ଗଙ୍ଗାଧର ତାଙ୍କ ଜୀବନ କାହାଣୀର କେତେକ ଘଟଣା ମାତ୍ର କେତୋଟି ପୃଷ୍ଠାରେ ଲିପିବଦ୍ଧ କରିଯାଇଅଛନ୍ତି । ତାହା ପୂର୍ଣ୍ଣାଙ୍ଗ ହୋଇପାରି ନାହିଁ । ତେବେ ସୁଖର କଥା ଯେ ତାଙ୍କର ହସ୍ତଲିଖିତ ବହୁ ଚିଠି 'ଗଙ୍ଗାଧର ପତ୍ରାବଳୀ' ନାମରେ ପ୍ରକାଶିତ ହୋଇଅଛି । ରାଧାନାଥ ଜୀବନୀରେ ବହୁବର୍ଷ ତଳେ ରାଧାନାଥଙ୍କର ବହୁପତ୍ର ସଙ୍କଳିତ ହୋଇ ତାଙ୍କର ବ୍ୟକ୍ତିତ୍ୱ ନିର୍ଦ୍ଧାରଣ କରିବାରେ ଯେପରି ସଫଳ ଉଦ୍ୟମ ହୋଇଥିଲା, ସେହିପରି ଶାନ୍ତି-ନିକେତନରୁ

ପ୍ରକାଶିତ 'କବିଲିପି' ପୁସ୍ତକରେ ରାଧାନାଥଙ୍କ ସମ୍ପର୍କୀୟ ପତ୍ରାବଳୀ ପ୍ରକାଶ କରାଯାଇ ଆଧୁନିକ ଯୁଗର ସ୍ୱରୂପ ନିର୍ଦ୍ଧାରଣ ପାଇଁ କେତେକ ପ୍ରଚେଷ୍ଟା ହୋଇଅଛି । ଏହାକୁ ଆଲୋଚନାର ପରିସର ଭିତରୁ "ସାରଳା ଦାସ ଙ୍କଙ୍କୁ ନା କାଶୀପର", ଗଙ୍ଗାଧରଙ୍କର ଇଂରେଜୀ ଜ୍ଞାନ ଥିଲା କି ନାହିଁ, ଇତ୍ୟାଦି ପ୍ରଶ୍ନର ସୃଷ୍ଟି ହୋଇଥାଏ । ଆବଶ୍ୟ ପ୍ରବନ୍ଧରେ ଏ ଶ୍ରେଣୀ କବି ଗଙ୍ଗାଧର ମେହେରଙ୍କ ପତ୍ରାବଳୀ ମାଧ୍ୟମରେ ତାଙ୍କୁ ଚିହ୍ନିବା ପାଇଁ ଉଦ୍ୟମ କରାଯାଇଅଛି । ଏହି ପତ୍ରଗୁଡ଼ିକରେ ମେହେରଙ୍କ କାବ୍ୟକଳାର କଳ୍ପନାବିଳାସ ନାହିଁ, ସେଥିରେ ଅଛି ଜୀବନର ସରଳ ଅଭିବ୍ୟକ୍ତି ଏବଂ ବାସ୍ତବ ଜୀବନର ଉଜ୍ଜ୍ୱଳ ଛବି ।

କବି ଗଙ୍ଗାଧର ଥିଲେ ଆଶାବାଦୀ, ମନ ଓ ପ୍ରାଣରେ । ଦାରିଦ୍ର୍ୟର ତୀବ୍ର କଷାଘାତ ମଧ୍ୟରେ ତାଙ୍କର ପ୍ରତିଭା ମଉଳି ଯାଇନଥିଲା । ପ୍ରତିକୂଳ ପରିସ୍ଥିତି ବିରୁଦ୍ଧରେ ଲଢ଼େଇ କରି ସେ ଜୀବନରେ ଅପୂର୍ବ ଯଶର ଅଧିକାରୀ ହୋଇପାରିଥିଲେ । ତପସ୍ୱିନୀ କାବ୍ୟର ପ୍ରାରମ୍ଭରେ କବି ବର୍ଣ୍ଣନା ପ୍ରସଙ୍ଗରେ କହିଛନ୍ତି —

'ଦାରିଦ୍ର୍ୟ-ପଙ୍କପୂର୍ଣ୍ଣ ମୋ ଜୀବନ ସର
ଝଞ୍ଜାନିଳଜଳଦ-ଜଳେ ଆବିଳ ଉଦର ।'

ତଥାପି ସ୍ୱପ୍ନବିଳାସୀ କବି ବାଲ୍ମୀକି ଆଶ୍ରମର ପୁଣ୍ୟମୟ ଓ ତ୍ୟାଗପୂତ ଚିତ୍ର ଦେବାକୁ ବ୍ୟାକୁଳ ହୋଇଛନ୍ତି । ଦାରିଦ୍ର୍ୟ ଯୋଗୁଁ ତାଙ୍କ ସାହିତ୍ୟ ସାଧନା ଅନେକ ସମୟରେ ମନ୍ଥର ଏବଂ କେତେବେଳେ ସମ୍ପୂର୍ଣ୍ଣ ବ୍ୟାହତ ହୋଇ ପଡ଼ିଅଛି । ତଥାପି ସେ

ଦେବଙ୍କଠାରେ ବିଷାଦର ବିଫଳ ଗୀତ ଗାନ କରିନାହାନ୍ତି । ଅବଶ୍ୟ ତାଙ୍କର ଜୀବନର କରୁଣ ଅନୁଭୂତି ସେ ନିଜ ହାତରେ ଲେଖି-ଯାଇଛନ୍ତି ଅତି ପ୍ରାଞ୍ଜଳ ଭାବରେ ଆତ୍ମଜୀବନୀରେ—"ମୋର ପିତାଙ୍କର ଆର୍ଥିକ ଅବସ୍ଥା ବଡ ଶୋଚନୀୟ ଥିଲା । ମୁଁ ସ୍କୁଲରେ ଶିକ୍ଷା ଶେଷପର୍ଯ୍ୟନ୍ତ ସାମାନ୍ୟ କୁରୁତା ଖଣ୍ଡେ କରି ପାରିନଥିଲି । ଖଣ୍ଡେ ଶାଢ଼ି ପୁଣି ଚିରି ଅତି ମ୍ଳାନ ହେବା ପର୍ଯ୍ୟନ୍ତ ବ୍ୟବହାର କରିବାକୁ ପଡ଼ିଥିଲା । ହାକିମ ଆସିଲା ଦିନ ସମସ୍ତେ କୁରୁତା ଲଗାଉଥିଲେ, ମୋ ଭାଗ୍ୟରେ କେବେ ଘଟି ନଥିଲା । ଭଲଧୋତି ନଥିବାରୁ ପିତାଙ୍କଠାରେ ଅଳି କଲାବେଳେ ପିତୃବ୍ୟ ତାଙ୍କର ଖଣ୍ଡେ ମୋଟାଧୋତି ବାହାର କରି ଦେଉଥିଲେ । ଥରେ ସ୍କୁଲ ଇନ୍‌ସପେକ୍ଟର ଜେନେରାଲ ଆସିବାରୁ ଅନେକ ଛାତ୍ର ନୂତନ କୋଟ, ଚପକନ ପ୍ରଭୃତି ପ୍ରସ୍ତୁତ କରାଇଲେ । ତାଙ୍କ ସଙ୍ଗେ ମୋର ପିତାଙ୍କଠାରୁ ଏକଟଙ୍କା ବା ଦେଢ଼ଟଙ୍କା ନେଇ ଶିକ୍ଷକ ମହାଶୟ ଲଙ୍ଗକ୍ଲଥ କିଣି ଦରଜୀକୁ ଦେଲେ । ଦରଜୀ ତାହା ପୂର୍ଣ୍ଣରୂପେ ସିଲାଇ କରିନଥିଲା । ସାହେବ ଆସିଗଲେ । କଞ୍ଚା ସିଲାଇ ଅବସ୍ଥାରେ ସେହି ଚାପକନ ଲଗାଇ ସାହେବଙ୍କଠାରେ ପରୀକ୍ଷା ଦେଲି । ସେ ଚପକନଟି ଆଉ ସିଲାଇ ହୋଇପାରିଲା ନାହିଁ । ପରେ ମୁଁ ନିଜ ହାତରେ ସିଲେଇ ନେଇଥିଲି ।" ୧—

କବି ରାଧାନାଥ ଅନୁଭବ କରିଥିଲେ ଯେ ସ୍ୱାସ୍ଥ୍ୟ ଶାନ୍ତି ଓ ଅବକାଶ ବିନା ବାଗ୍‌ଦେବୀଙ୍କର ଆରାଧନା ଅସମ୍ଭବ । ମାତ୍ର କବି ମେହେରଙ୍କ ଜୀବନ ଅହରହ ବିପଦର ମୂର୍ତ୍ତି । ଦାରିଦ୍ର୍ୟର ଘନଘଟା ମଧ୍ୟରେ ସେ କେବେହେଲେ ଶାନ୍ତିଲାଭ କରି ପାରୁନଥିଲେ । ପାରି-

୧—ଆତ୍ମଜୀବନୀ—ଗଙ୍ଗାଧର ଗ୍ରନ୍ଥାବଳୀ—ପୃ ୪୧୧

ବାରିକ ଜଞ୍ଜାଳ ଓ ଅଭାବର ପୀଡ଼ନ ମଧ୍ୟରେ କବିଙ୍କର ସୃଜନୀଶକ୍ତି କେତେକାଳ ପାଇଁ ସ୍ତିମିତ ହୋଇ ଯାଇଥିଲା । କବି ତାଙ୍କର ପ୍ରେରଣାଦାତା ଶ୍ରୀଯୁକ୍ତ ବ୍ରଜମୋହନ ପଣ୍ଡାଙ୍କୁ ଥରେ ଗୋଟିଏ ଚିଠିରେ ଲେଖିଥିଲେ—"ମୁଁ ନିଜର ଦୁରବସ୍ଥା ମନପୀଡ଼ା ଓ ସୁବିଧାର ପ୍ରତିକୂଳତା ଯୋଗୁ କିଛି ଲେଖିପାରି ନାହିଁ । ୨—ଏ ସବୁ ପ୍ରତିକୂଳ ଅବସ୍ଥା ସତ୍ତ୍ୱେ ସେ ଡରିଯିବାର ପାତ୍ର ନଥିଲେ । ସେ ଥିଲେ ବାସ୍ତବରେ କର୍ମଯୋଗୀ । ତଥାକଥିତ ଆଭିଜାତ୍ୟ ଅଥବା ପ୍ରାଚୁର୍ଯ୍ୟ ତାଙ୍କର ନ ଥିଲେହେଁ ସେ ଥିଲେ ମନରାଜ୍ୟର ରାଜା । ସେଥିପାଇଁ ସେ ସର୍ବଦା ବିଶ୍ୱାସ କରୁଥିଲେ—

କରମ ନିମନ୍ତେ ନାହିଁ ବଂଶ ପ୍ରୟୋଜନ,
ନୀଚ ହୋଇ କରେ ଯେବେ ଉତ୍ତମ କରମ,
ତା ଚରଣେ ନତ ସେବେ ସଂସାର ଧରମ ।
କର୍ମଯୋଗୁ ଲୌହ ଆସି ଚଢ଼େ ସମାଜରେ
ଶୋଭିତ ହେବାକୁ ସ୍ୱର୍ଣ୍ଣ ଲଗେ ତା ପଦରେ ।

( କର୍ମଗୁଣ )

ନାନା ଅସୁବିଧା ଓ ଦୁର୍ଘଟଣାର ସମ୍ମୁଖୀନ ହୋଇ ସୁଦ୍ଧା ସେ ଲେଖନୀ ଧାରଣ କରିବାକୁ ପଶ୍ଚାଦ୍‌ପଦ ହୋଇନଥିଲେ ଏବଂ ମାତୃଭାଷା ଓ ସାହିତ୍ୟର ସେବା କରିବାକୁ ଅତି ପୁଣ୍ୟ କାର୍ଯ୍ୟ ବୋଲି ମନେ କରୁଥିଲେ । କବିଙ୍କର ବେଦନାତୁର ଜୀବନର କରୁଣ ଅନୁଭୂତି ଏବଂ ସାହିତ୍ୟ ସେବାରେ ଅଟଳ ନିଷ୍ଠାର ପରିଚୟ ମିଳେ । ତାଙ୍କର ଗୋଟିଏ ଚିଠିରେ ସେ ଲେଖିଥିଲେ—'ବରପାଲି ଜମିଦାରଙ୍କଠାରୁ ଏ ମଧ୍ୟରେ ଅଧିକ କିଛି କଥା ପାଇନାହିଁ ।

---

୨— ଗଙ୍ଗାଧର ପତ୍ରାବଳୀ—୨୭-୧୨-୧୯୦୯

ସେଠାରେ କାମକଲେ ମୋତେ ଅହୋରାତ୍ର ଆବଦ୍ଧ ରହିବାକୁ ହୁଏ । କିଛି ଲେଖିବାକୁ ସମୟ ମିଳେ ନାହିଁ । ମନରେ ସୁଖ ରହେ ନାହିଁ । ଯେତେବେଳେ ବରପାଲିରେ ୮ । ୧୦ ଟଙ୍କା ବେତନରେ ଥିଲି, ସେତେବେଳେ ଇନ୍ଦୁମତୀ ଲେଖିଥିଲି । ବିଜେପୁରରେ 'କୀଚକବଧ' ଲେଖିଲି । ଯାହାକିଛି ବରପାଲିରେ ଲେଖିଅଛି । ନାନାପ୍ରକାରରେ ସମସ୍ତ ଖୋଜ ଲେଖିଅଛି । ଏଠାରେ ଅଳ୍ପ-ବେତନ, ପର ଗୃହରେ ବାସ, ପରିବାରର ଅଶାନ୍ତି, ବନ୍ଧୁ ବାନ୍ଧବଙ୍କର ସହାନୁଭୂତିର ଅଭାବ ଥିଲେହେଁ ମୋ ମନରେ ଶାନ୍ତି ଓ ଲେଖିବାକୁ ସୁବିଧା ଅଛି ।" × ×

"ମୋର ପିତାମାତାଙ୍କର ଅବସ୍ଥା ଅତି ଶୋଚନୀୟ ଥିଲା । ସେମାନଙ୍କର ଏକମାତ୍ର ପୁତ୍ର ମୁଁ ସେମାନଙ୍କର ଅନିଚ୍ଛା ସତ୍ତ୍ୱେ ବରପାଲି ଜମିଦାରଙ୍କ ତତ୍କାଳୀନ ମୁକ୍ତ୍ୟାରଙ୍କ ଆଗ୍ରହରେ ( ବଳାତ୍କାରରେ କହିଲେ ଅତ୍ୟୁକ୍ତି ହେବ ନାହିଁ ) ପ୍ରଥମରେ ୫୭୮ ବେତନରେ କାର୍ଯ୍ୟକଲି ।

ବାରମ୍ବାର କାର୍ଯ୍ୟ ତ୍ୟାଗରେ ପ୍ରୟାସୀ ହୋଇ ଜମିଦାରଙ୍କ ବାଧ୍ୟତାରୁ ମୁକ୍ତ ହୋଇ ନପାରି ରହିଗଲି । ଘରଗୁଡ଼ିକ ପାରିବାରୁ ଉଚ୍ଚଶିକ୍ଷାରୁ ବଞ୍ଚିତ ହେଲି । ସେହି କାରଣରୁ ପୁତ୍ରଟିକୁ ମଧ୍ୟ ମୂର୍ଖ-କଲି । ଏତେବେଳକୁ ସଂସାରପ୍ରତି ମୋର ଅନାସକ୍ତି ଜାତ ହୋଇଅଛି । ଶେଷ ସମୟରେ ଆପଣଙ୍କୁ ପାଇ କିଛି ଲେଖି ପାରିଲେ ସାର୍ଥକ ଜୀବନ ହେବ ବୋଲି ଦୃଢ଼ଧାରଣା ହୋଇଅଛି । ତେବେ ସବୁ ଈଶ୍ୱରଙ୍କ ଇଚ୍ଛାଧୀନ । ମନ ଉଦାସ, ଜୀବନ ଶିଥିଳ । ୩ ।

୩—ଗଙ୍ଗାଧର ପତ୍ରାବଳୀ—୨୧ । ୧୧ । ୧୯୧୦ ।

ଖଡ଼ଗଦାରେ ପଦ୍ମ ଫୁଟିଲା ପରି ସେତେବେଳର ଅଣ-ଓଡ଼ିଆ ଅଞ୍ଚଳ ସମ୍ବଲପୁରର ଏକ ଅଖ୍ୟାତ ପଲ୍ଲୀରେ ନାନା ଦୁର୍ଘଟନା ମଧ୍ୟରେ କବି ଗଙ୍ଗାଧରଙ୍କର ସାହିତ୍ୟିକ ଜୀବନ ଆରମ୍ଭ ହୋଇ-ଥିଲା । ତେଣୁ ଦୈନ୍ୟ ଓ ହୀନମନ୍ୟତା କବିଙ୍କୁ ଗ୍ରାସ କରିବା ସ୍ୱାଭାବିକ । ତାଙ୍କର ପ୍ରଥମ ପ୍ରକାଶିତ ରଚନା 'ଇନ୍ଦୁମତୀ' ୧୮୯୪ ଖ୍ରୀଷ୍ଟାବ୍ଦରେ ମୁଦ୍ରିତ ହୋଇଥିଲା । ତତ୍କାଳୀନ ଓଡ଼ିଆ ସାହିତ୍ୟର ଶ୍ରେଷ୍ଠ ସାଧକ ରାଧାନାଥ ଶିକ୍ଷା ବିଭାଗର ଜଣେ ଉଚ୍ଚପଦସ୍ଥ କର୍ମଚାରୀ ଥିଲେ । କବି ରାଧାନାଥ ଗଙ୍ଗାଧରଙ୍କୁ ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ ହିଁ ଗଙ୍ଗାଧର ନିଜର ଅର୍ଥନୈତିକ ଦୁର୍ବିପାକ ମଧ୍ୟରେ ମାନସିକ ସମତା ଅଣାକରି ପାରୁ ନଥିଲେ । ରାଧାନାଥଙ୍କର 'ମହାଯାତ୍ରା' କାବ୍ୟର ପ୍ରାପ୍ତି ସ୍ୱୀକାର କରି ଗଙ୍ଗାଧର ଯେଉଁ ପତ୍ର ଲେଖିଥିଲେ, ସେଥିରେ 'ମହାଯାତ୍ରା' ସମ୍ପର୍କରେ ତାଙ୍କର ମତାମତ ଦେବା ସଙ୍ଗେ ସଙ୍ଗେ ନିଜର 'ଇନ୍ଦୁମତୀ' କାବ୍ୟର ସୁପ୍ରଚାର ପାଇଁ ଅତି କରୁଣ ଭାବରେ ପ୍ରାର୍ଥନା ମଧ୍ୟ ଜଣାଇଥିଲେ । ତାଙ୍କର ଭାଷାରେ 'ଇନ୍ଦୁମତୀ ବର୍ଷକୁ ୫୦ ଖଣ୍ଡ ବିକ୍ରୟ ହେଉ ବା ୩୦ ଖଣ୍ଡ ବିକ୍ରୟ ହେଉ, ତାହା ନ ହୋଇ ୧୦ ଖଣ୍ଡ ବିକ୍ରୟ ହେଲେ ସୁଦ୍ଧା ଓଡ଼ିଶାର କୌଣସି ଏକ ସ୍କୁଲରେ ପାଠ୍ୟପୁସ୍ତକ ହେବା ମୋହର ସାମାନ୍ୟ ସୌଭାଗ୍ୟର ବିଷୟ ନୁହେଁ । ଯଦି ସ୍କୁଲ ମାନଙ୍କରେ ପୁରସ୍କାର ଦେବାହିଁ ବା କି ଅନ୍ୟ କୌଣସି ଉପାୟରେ କିଛି ବିକ୍ରୟ କରାଇ ଦେଇ ଛପା ଖର୍ଚ୍ଚଟି ଆଦାୟ କରାଇ ଦିଅନ୍ତେ, ତାହାହେଲେ କେତେକ ବନ୍ଧୁଙ୍କ ଠାରୁ ଋଣରୁ ମୁକ୍ତ ହୋଇ ପାରନ୍ତି । ଭରସା କରେଁ, ସେପରି ବିଚାର ଅବଶ୍ୟ ଆପଣଙ୍କ ହୃଦୟରେ ଥିବ, ତଥାପି ମୋହର ଏକମାତ୍ର ସହାୟ ଏବଂ ଆଶ୍ରୟସ୍ଥଳ ହେତୁ ଜଣାଇଲି ।[୪]"

୪—ପତ୍ର ୬-୨-୧୮୯୬ ରାଧାନାଥ ଜୀବନୀ-ପୃ ୨୪୩

ଗଙ୍ଗାଧର ବହୁକାବ୍ୟ କବିତା ରଚନା କରି ଅଧିକାଂଶ ସ୍ଥଳରେ ଅଧିକାଂଶ ହୋଇ ଅଛନ୍ତି । ତାଙ୍କ କାବ୍ୟର ବିଷୟ ବସ୍ତୁ ଆଲୋଚନା କରି ଅନେକ ମତ ପ୍ରକାଶ କରନ୍ତି ଯେ ଯୁଗର ଏକ ସନ୍ଧିକ୍ଷଣରେ ମେହେରଙ୍କ ଜନ୍ମ ହୋଇଥିବାରୁ ତତ୍କାଳୀନ ସମାଜର ଅନୈତିକତା ଓ କୁସଂସ୍କାର ମଧ୍ୟରେ ବିଚଳିତ ହୋଇ ସେ ଭାରତୀୟ ତପୋବନ ସଭ୍ୟତାର ଆଦର୍ଶ ପରିପ୍ରକାଶ ପାଇଁ ପୌରାଣିକ କଥାବସ୍ତୁର ଆଶ୍ରୟ ଗ୍ରହଣ କରିଥିଲେ । ତାଙ୍କର ପତ୍ରାବଳୀ ପାଠ କଲେ ଜଣାଯାଏ ଯେ ମେହେର ଅବଶ୍ୟ ନୀତିବାଦୀ ଥିଲେ, ମାତ୍ର ମୌଳିକ କଥାବସ୍ତୁ ସୃଷ୍ଟି କରିବାପାଇଁ ମେହେରଙ୍କ ପ୍ରତିଭା ଅନୁକୂଳ ନଥିଲା । ସେଥିପାଇଁ ସେ ପୁରାଣ ଏବଂ ଇତିହାସର ଆଶ୍ରୟ ଗ୍ରହଣ କରିଥିଲେ । ତାଙ୍କର ଗୋଟିଏ ପତ୍ର ପାଠ କଲେ ଜଣାଯାଏ ଯେ ସେ ବରପାଲିରେ ଥିବା ସମୟରେ ବଙ୍ଗଳା 'ରାଜସ୍ଥାନ' ପାଠ କରିଥିଲେ । ଏହି ପୁସ୍ତକ ପାଠକରି ସେ ପଦ୍ମିନୀ ଲେଖିବାପାଇଁ ପ୍ରେରଣା ଲାଭ କରି-ଥିଲେ । ଫକୀର ମୋହନ ରାମାୟଣ ଓ ମହାଭାରତର ଅନୁବାଦ କରି ଯାଇଥିବାରୁ ସେ ଆଉ ତାହାର ଅନୁବାଦରେ ବ୍ରତୀ ହେବାକୁ ମନେକରି ନଥିଲେ । ବରଂ ତାହାର କେତେକ ସୁନ୍ଦର ଉପାଖ୍ୟାନ ଗ୍ରହଣ କରି କବିତା ରଚନା କରିବାପାଇଁ ଆଗ୍ରହ ପ୍ରକାଶ କରି-ଥିବା ଜଣାଯାଏ । ମୁକୁର ସମ୍ପାଦକ ବ୍ରଜସୁନ୍ଦର ଦାସ ତାଙ୍କୁ କେତେକ କିମ୍ବଦନ୍ତୀ ବିଷୟରେ ଲେଖନୀ ଚଳାଇବା ପାଇଁ ଅନୁରୋଧ କରିଥିବା କଥା ସ୍ୱୀକାର କରିଛନ୍ତି (୪) ଫକୀରମୋହନ ସେନାପତି ମୌଳିକ କଥାବସ୍ତୁ ରଚନା କରି ଆଧୁନିକ ଯୁଗର ନୂତନ ସରଣୀ ଦେଖାଇ ଥିଲେହେଁ ଗଙ୍ଗାଧର ତାହାଦ୍ୱାରା ପ୍ରଭାବିତ ହୋଇ ପାରି ନଥିଲେ ।

୪—ଗଙ୍ଗାଧର ପତ୍ରାବଳୀ—୨୬-୧୨-୧୯୦୯

ସାଧାରଣ ଆଲୋଚନା କ୍ଷେତ୍ରରେ ଗଙ୍ଗାଧର ଜଣେ ଭାବ-କବି ଭାବରେ ହିଁ ପରିଚିତ । ମାତ୍ର ସେ ଜଣେ ସଂଗଠକ ଏବଂ ଉଗ୍ର ଜାତୀୟତାବାଦୀ, ଏକଥା ଅନେକ ସ୍ମରଣ କରି ପାରନ୍ତି ନାହିଁ । ଏହି ପ୍ରସଙ୍ଗରେ ତତ୍କାଳୀନ ଓଡ଼ିଶାର ଇତିହାସ ଏବଂ ସମ୍ବଲପୁରର ଅବସ୍ଥିତି ଆଲୋଚନା କଲେ ଗଙ୍ଗାଧରଙ୍କ ବ୍ୟକ୍ତିତ୍ୱ ଅଧିକ ପ୍ରତିଷ୍ଠିତ ହୋଇ ପାରିବ । ଗଙ୍ଗାଧର ଓଡ଼ିଆଭାଷୀ ଅଞ୍ଚଳରେ ଜନ୍ମଗ୍ରହଣ କରିଥିଲେ ହେଁ ଓଡ଼ିଶାରେ ଜନ୍ମଗ୍ରହଣ କରି ନଥିଲେ । ସେତେବେଳେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହୋଇ ନଥିଲା । ନାନା କାରଣରୁ ଭାରତୀୟ ଦରବାରରେ ଓଡ଼ିଆ ଭୂଖଣ୍ଡ ଅତ୍ୟନ୍ତ ଅବହେଳିତ ହୋଇ ପଡ଼ିଥିଲା ।

ଓଡ଼ିଆ ଭାଷା ଓ ସାହିତ୍ୟକୁ ଲୋପ କରି ଏ ଅଞ୍ଚଳରେ ବଙ୍ଗ ଭାଷା ଚଳାଇବା ପାଇଁ ଏକଦା ପ୍ରବଳ ଚକ୍ରାନ୍ତ ଏବଂ ଆନ୍ଦୋଳନ ହୋଇଥିଲା । ମାତ୍ର ତତ୍କାଳୀନ କର୍ମବୀର ଗୌରୀଶଙ୍କର, ରାଧାନାଥ, ଫକୀର ମୋହନ, ଏବଂ ମଧୁସୂଦନ ପ୍ରଭୃତିଙ୍କ ଯତ୍ନରେ ଓଡ଼ିଆ ଭାଷା ଏହି ଜାତୀୟ ସଙ୍କଟରୁ ଉଦ୍ଧାରପ୍ରାପ୍ତ ହୋଇ ଥିଲା । ମାତ୍ର ଏ କ୍ଷେତ୍ରରେ ସମ୍ବଲପୁରର ସ୍ଥାନଥିଲା ସ୍ୱତନ୍ତ୍ର । ସମ୍ବଲପୁର ୧୮୬୨ ସାଲ ପର୍ଯ୍ୟନ୍ତ ବଙ୍ଗଳା ଅଧୀନରେ ଓଡ଼ିଶା ଡିଭିଜନର ଅନ୍ତର୍ଗତ ଥିଲା । ମାତ୍ର ୧୮୬୨ ଏପ୍ରିଲ୩୦ ତାରିଖ ଦିନ ଏକ ଆଦେଶ ନାମାରେ ସମ୍ବଲପୁରକୁ ମଧ୍ୟପ୍ରଦେଶ ସହିତ ସାମିଲକରି ଦିଆଗଲା । ଏହା ଫଳରେ ସମ୍ବଲପୁରରେ କ୍ରମଶଃ ଭାଷା ସଙ୍କଟ ଉପସ୍ଥିତ ହେଲା । ସମ୍ବଲପୁରର ଯେଉଁ ଅଞ୍ଚଳ ଗୁଡ଼ିକ ସଂଯୁକ୍ତ ହେଲା ସେଠାରେ ଓଡ଼ିଆଭାଷା ଚଳୁ ନଥିଲା । ଜନସାଧାରଣ ଚଳପ୍ରଚଳ ହେବାରେ ଅଧିକ ଅସୁବିଧା ଅନୁଭବ କଲେ । ୧୮୯୩ ସାଲ ବେଳକୁ ସମ୍ବଲ-

ପୂର୍ବରେ ଓଡ଼ିଆ ଭାଷାକୁ କ୍ରମଶଃ ଲୋପ କରିବାପାଇଁ ଧୀରେଧୀରେ ସରକାରୀ ଚେଷ୍ଟା ଆରମ୍ଭ ହୋଇଥିଲା । ଏହି ବିଷୟ ସମ୍ବଲ-ପୁର ହିତୈଷିଣୀ ପ୍ରଥମେ ପ୍ରଚାର କରି ଓଡ଼ିଶାରେ ଚହଳ ପକାଇ ଦେଇଥିଲେ । ହିତୈଷିଣୀର ଏକ ସମ୍ବାଦ ଉପରେ ଆଲୋଚନା କରି ବାଲେଶ୍ୱରରୁ ପ୍ରକାଶିତ "ଓଡ଼ିଆ ଓ ନବ ସମ୍ବାଦ" ଲେଖି ଥିଲେ, ପୋଲିସ କାଗଜମାନ ଦେଶୀୟ ଭାଷାରେ ଲିଖିତ ହେବା-ଦ୍ୱାରା ଯେ କେତେ ସୁବିଧା ତାହା ବୋଲିବା ବାହୁଲ୍ୟ ଅଟେ । ଯେତେବେଳେ ସେ ପ୍ରଦେଶର ଭାଷା ଓଡ଼ିଆ, ସେତେବେଳେ ସେଠାରେ ଗୋଟିଏ ଭିନ୍ନ ଭାଷା ପ୍ରବର୍ତ୍ତାଇବା ପାଇଁ ଏତେ ବ୍ୟଗ୍ରତା ପ୍ରକାଶର ହେତୁ ଆମ୍ଭେମାନେ ବୁଝିବାକୁ ଅକ୍ଷମଅଟୁ । ସହଯୋଗୀ 'ହିତୈଷିଣୀ' ଯଥାର୍ଥ କହିଛନ୍ତି ଯେ ଏପରି ପ୍ରସ୍ତାବର ହେତୁ କେବଳ ସେଠାରୁ ଓଡ଼ିଆଭାଷା ପ୍ରଚଳନ ରହିତ କରାଗଲା । ଆମ୍ଭେମାନେ ଆଶାକରୁ କମିସନର ବାହାଦୁର ଏବିଷୟକୁ ପୁନର୍ବାର ବିଚାର କରି ଦେଖିବେ । ଆଉ ସମ୍ବଲପୁର ବାସୀମାନଙ୍କର ମଧ୍ୟ କର୍ତ୍ତବ୍ୟ ଯେ ଶୀଘ୍ର ଏ ବିଷୟରେ ମୁକ୍ତକାର ହେବେ ।୧

୧୮୯୫ ସାଲ ପର୍ଯ୍ୟନ୍ତ ସମ୍ବଲପୁରରେ ଓଡ଼ିଆ ଭାଷାକୁ ପ୍ରଚଳନ କରିବା ପାଇଁ ଓଡ଼ିଶାର ପତ୍ର-ପତ୍ରିକାରେ ବହୁ ଆନ୍ଦୋ-ଳନ ଚାଲିଲା । ମାତ୍ର ମଧ୍ୟପ୍ରଦେଶରେ ଚିଫ କମିସନର ଉଡ୍‌ବ-ରନ ସାହେବ ଏଥିପାଇଁ ଆଦୌ କର୍ଣ୍ଣପାତ କଲେନାହିଁ । ବଡ଼-ଲାଟଙ୍କ ନିକଟରେ ଏ ସଂପର୍କୀୟ ଆପତ୍ତି ଅଭିଯୋଗର ମଧ୍ୟ କୌଣସି ନ୍ୟାୟ ମିଳିଲାନାହିଁ ।୨। ଅବଶ୍ୟ ତତ୍କାଳୀନ ବଙ୍ଗ

୧ । ଓଡ଼ିଆ ଓ ନବ ସମ୍ବାଦ—୮ । ୭ । ୯୩

୨ । ଓଡ଼ିଆ ଓ ନବ ସମ୍ବାଦ—୧୩ । ୧୧ । ୨୫

ପ୍ରଦେଶର ଲାଟ ସାର୍ ଆଣ୍ଡ୍ରୁ ଫ୍ରେଜର ଅଇ:ସି:ଏସ୍ ଓଡ଼ିଆ ଭାଷା ସପକ୍ଷରେ ନିମ୍ନମତ ମତପ୍ରକାଶ କରିଥିଲେ—"ମଧ୍ୟ ପ୍ରଦେଶର ଅନ୍ୟ କୌଣସି ଅଞ୍ଚଳରେ ସମ୍ବଲପୁର ଛଡ଼ା ଓଡ଼ିଆ କଥିତ ଭାଷା ନୁହେଁ । ତେଣୁ ସେ ଜିଲ୍ଲାକୁ ଯେଉଁ ସରକାରୀ କର୍ମଚାରୀମାନେ ପ୍ରେରିତ ହେବେ ସେମାନେ ଶାସନ ପରିଚାଳନାର ସୁବିଧା ଦୃଷ୍ଟିରୁ ଓଡ଼ିଆ ଶିଖିବା ଅବଶ୍ୟକ । ଇଂରେଜୀ ଏବଂ ଦେଶୀୟ କର୍ମଚାରୀଗଣ ସେ ଜିଲ୍ଲାକୁ ଅଳ୍ପ ସମୟ ପାଇଁ ବଦଳି ହେବାକୁ ଇଚ୍ଛା କରୁନଥିଲେ ଅଳ୍ପ ସମୟ ଭିତରେ ଗୋଟିଏ ଭାଷା ଶିଖିବାକୁ ପଡ଼ୁଥିବା ଏହାର ଏକମାତ୍ର କାରଣ । ଏତଦ୍ ବ୍ୟତୀତ ସେଠାରେ ଶାସନ ପରିଚାଳନା ପାଇଁ ତଳିଆ କର୍ମଚାରୀମାନେ ସମସ୍ତେ ଓଡ଼ିଆ ହେବାକୁ ବାଧ୍ୟ କାରଣ ତାହା ମୁଖ୍ୟତଃ ଓଡ଼ିଆଭାଷୀ ଅଞ୍ଚଳ । ଏହି ଓଡ଼ିଆ କର୍ମଚାରୀଗଣ ଭାଷାଗତ କାରଣରୁ ଅନ୍ୟ ଅନ୍ୟ ଅଞ୍ଚଳକୁ ମଧ୍ୟ ବଦଳି ହେବା ସମ୍ଭବ ନଥିଲା । ଗୋଟିଏ ଅଞ୍ଚଳରେ ବହୁକାଳ ରହି ସେମାନେ ଅସାଧୁ ହୋଇଯାଉଥିଲେ । ସେଠାରେ ଅଧିକାଂଶ ଲୋକ ଓଡ଼ିଆ ହେତୁ ସେମାନଙ୍କ ଉପରେ ହିନ୍ଦୀ ଭାଷା ଲଦିଦେବା ଅତ୍ୟାଚାର ଛଡ଼ା ଆଉ କଣ କୁହାଯାଇପାରେ ? ସୁଖର କଥା ଯେ ଭାରତ ସରକାର କ୍ରମେ ଏହି ମତ ଗ୍ରହଣ କରିଥିଲେ ଏବଂ ସମ୍ବଲପୁରରେ ଓଡ଼ିଆଭାଷାର ପ୍ରଚଳନ ହୋଇଥିଲା । ଏବଂ ପରେ ସମ୍ବଲପୁରକୁ ଓଡ଼ିଆଭାଷା—ଅଞ୍ଚଳ ସହିତ ମିଶାଇ ଦିଆଯାଇଥିଲା ଏହି ଭାଷା ଆନ୍ଦୋଳନରେ କବି ଗଙ୍ଗାଧର ପ୍ରତ୍ୟକ୍ଷ ଅଂଶ ଗ୍ରହଣ କରିଥିଲେ । ସରକାରଙ୍କ ଅନ୍ୟାୟ ବିରୁଦ୍ଧରେ ପ୍ରତିବାଦ କରି ସେ "ଭାରତୀ ରୋଦନ" ଏବଂ "ଉତ୍କଳ ଭାରତୀଙ୍କ ନିବେଦନ" ଶୀର୍ଷକ ଦୁଇଟି ଲେଖା ପ୍ରକାଶ କରିଥିଲେ । ଏହି ଭାଷା ଆନ୍ଦୋଳନ ସଂପର୍କରେ ତାଙ୍କର ଉଦ୍‌ବୋଧନ କବିତାରେ ଲେଖିଥିଲେ—

"ଯା ଭାଷା ଦୁର୍ବଳା କାହିଁ ତାର ଜ୍ଞାନ ?
କାହିଁ ତାର ରାଜଦ୍ବାରେ ସମ୍ମାନ ?
ଉଚ୍ଚ ହେବାପାଇଁ କରେ ଯେବେ ଆଶା
ଉଚ୍ଚ କର ଆଗେ ନିଜ ମାତୃଭାଷା ।

+ + +

ଉଚ୍ଚ ପଦପାଇଁ ଡାକିଲେ ରାଜନ
କେତେଜଣ ଅଛୁ ତହିଁକି ଭାଜନ ?
ଛତ୍ରବେଶୀଙ୍କର ସହିତ ତୁଳନା
କରି କର ନିଜ ମଧ୍ୟରେ କଳନା
ତହିଁରୁ ବୁଝିବ ନିଜେ କେତେ ହୀନ
କରିଅଛୁ ତୁମ୍ଭେ ମାତୃଭାଷା ହୀନ ।"

ଗଙ୍ଗାଧର ଥିଲେ ଅଭିଜାତକର୍ମା ପୁରୁଷ । ଦାରିଦ୍ର୍ୟକୁ ସେ କେବେହେଲେ ଖାତିର କରିନାହାନ୍ତି । ବରଂ ଏହି ଜାତୀୟ ବୀର ମାତୃଭାଷା ସେବାରୁ ବେଳେ ବେଳେ ଅଭାବର ତାଡନାରେ ବଞ୍ଚିତ ହୋଇଛନ୍ତି ବୋଲି ଦୁଃଖ ପ୍ରକାଶ କରିଛନ୍ତି । ସେ ଥିଲେ ଜାତିର ପୂଜାରୀ । ଧନ ଅପେକ୍ଷା ମାନକୁ ସେ ଅଧିକ ଧ୍ୟେୟ କରୁଥିଲେ । ସେଥିପାଇଁ ତାଙ୍କର କାବ୍ୟସଂସାରରେ ଦେବତା ଏବଂ ଅସୁର ପାପ ଏବଂ ପୁଣ୍ୟର ଅବିରତ ସଂଗ୍ରାମ ଲାଗିଅଛି ଏବଂ ପରିଶେଷରେ ଦେବତା ତଥା ପୁଣ୍ୟର ଜୟ-ଜୟକାରହିଁ ତାଙ୍କର ଘୋଷିତ ବାଣୀ । ସେ ବିଶ୍ବାସ କରୁଥିଲେ ଯେ "ଅର୍ଥ ବଡ଼ ନୁହେଁ । ଯେଉଁମାନଙ୍କର ଧନର ସଦ୍ ବ୍ୟବହାର ହେଉଅଛି, ସେମାନେ ପ୍ରକୃତ ଧନୀ । ଦୈବଧନ ଓ ଅସୁରଧନ ଏପରି ଦୁଇପ୍ରକାର ଧନ ଅଛି । ଦୈବଧନରେ ସଂସାରର କଲ୍ୟାଣ ସାଧିତ ହୁଏ । ଜଗତ ସେହି ଧନରେ ଅର୍ଜିତ । ଅସୁରି ଧନରେ

ଲୋକର ଭୂତ ଭୂତ ଅବସ୍ଥା ହୁଏ। ଚର୍ମରେ ଜଗତ୍ ଖ୍ୟାତ। ଦୈବ-ଧନର ଅଧିକାରୀଙ୍କୁ ସନ୍ତାନମାନେ ପୂଜା କରନ୍ତି। ୮। ସେ ପୁଣି ଲେଖିଥିଲେ ଯେ ମୁଁ ଉଚ୍ଛନ୍ନ ବା ଉନ୍ନତ ବେଶଭୂଷାରେ ଲାଳସୀ ନୁହେଁ। ଦରିଦ୍ର ଭାବରେ ଜୀବନ କଟାଇବାକୁ ଲଜ୍ଜିତ ନୁହେଁ। ସାଧୁତା ରକ୍ଷା ମୋର ଜୀବନର ଏକମାତ୍ର ଲକ୍ଷ୍ୟ। ୯।

ଗଙ୍ଗାଧର ଥିଲେ ଜଣେ ନିଷ୍ଠାପର ବାଣୀ ସାଧକ। ସାରସ୍ୱତ ମନ୍ଦିରର ପୂଜାରୀ ଭାବରେ ସେ କୌଣସି ବ୍ୟକ୍ତିପୂଜାକୁ ପସନ୍ଦ କରୁନଥିଲେ। ତାଙ୍କର ସମକାଳୀନ ସମାଜରେ ଲୋକେ ବ୍ୟକ୍ତିଗତ ସ୍ୱାର୍ଥପାଇଁ ପ୍ରତିଷ୍ଠିତ ଶାସକ ଗୋଷ୍ଠୀର ତୋଷାମୋଦ କରୁଥିଲା-ବେଳେ ସ୍ୱାଧୀନଚେତା ଗଙ୍ଗାଧର ସେଥି ତ ଆଦୌ ଭ୍ରୂକ୍ଷେପ କରିନାହାନ୍ତି। ସେ ତାଙ୍କର ବନ୍ଧୁଙ୍କ ପାଖକୁ ଖଣ୍ଡିଏ ଚିଠିରେ ଲେଖିଥିଲେ—ସେ ରାଜସେବାର ଲାଳସୀ ନୁହନ୍ତି। ଏପରିକି ସେ ଇଂରେଜ ରାଜାଙ୍କ ପଦପୂଜା କରିବାକୁ କାମନା କରନ୍ତିନାହିଁ। ୧୦

ଏହି କେତେଗୋଟି ପତ୍ରରୁ ଗଙ୍ଗାଧରଙ୍କ ଜୀବନର ବିକାଶ ପ୍ରାପ୍ତ ଦର୍ଶନ, ଆତ୍ମବିଶ୍ୱାସ, ସାଧନା, ତେଜସ୍ୱିତା ତଥା ନିଷ୍ଠା ସମ୍ବନ୍ଧରେ ଅନୁମାନ କରାଯାଇପାରେ। ବ୍ୟକ୍ତିତ୍ୱ ତାଙ୍କର ଅତ୍ୟନ୍ତ ବରଣୀୟ ଏବଂ ମହାନ। ତାଙ୍କର ଦେଶପ୍ରୀତି ଉଜ୍ଜ୍ୱଳ ଓ ନିର୍ଭୀକତା ପୂର୍ଣ୍ଣ। ସେଥିପାଇଁ ସେମାନଙ୍କ ପତ୍ରାବଳୀ ପାଠ ନକଲେ ତାଙ୍କର ପୂର୍ଣ୍ଣ ପରିଚୟ ଲାଭ କରିବା ଆଦୌ ସମ୍ଭବ ନୁହେଁ।

———

୮। ଗଙ୍ଗାଧର ପତ୍ରାବଳୀ—୧୦ । ୧ । ୦୦

୯। ଗଙ୍ଗାଧର ପତ୍ରାବଳୀ—୨୫ । ୧୧ । ୧୦

୧୦। ଗଙ୍ଗାଧର ପତ୍ରାବଳୀ—୨୦ । ୧୧ । ୧୫

## ଓଡ଼ିଆ ସାହିତ୍ୟରେ ରହସ୍ୟବାଦର ଧାରା

'ମିଷ୍ଟିସିଜିମ୍' ଏହି ଶବ୍ଦଟି ସାଧାରଣତଃ ରହସ୍ୟବାଦ, ଅତୀନ୍ଦ୍ରିୟବାଦ କିମ୍ବା ବ୍ରହ୍ମବାଦ ଅର୍ଥରେ ବୁଝାଯାଇଥାଏ। କେହି କେହି ଏହାକୁ ଛାୟାବାଦ ଅର୍ଥରେ ମଧ୍ୟ ନାମିତ କରି ଥାଆନ୍ତି । ଯେଉଁ ଭାବନା ସହଜ ଓ ସ୍ୱାଭାବିକ ଭାବରେ ପ୍ରକାଶିତ ନହୋଇ ରହସ୍ୟର ସଞ୍ଚାର କରେ ଅଥବା କୌଣସି ନୂତନ ସତ୍ୟର ଇଙ୍ଗିତ ପ୍ରଦାନ କରେ, ତାହା ରହସ୍ୟବାଦ ।

ଭାରତୀୟ ସାହିତ୍ୟରେ ଏହି ରହସ୍ୟବାଦର ଧାରଣା ଅତ୍ୟନ୍ତ ପ୍ରାଚୀନ । ଆତ୍ମାର ପରମାତ୍ମାଙ୍କ ସହିତ ଆକର୍ଷଣ ଅଥବା ଆତ୍ମା ଓ ପରମାତ୍ମାଙ୍କ ମିଳନ ଜନିତ ଭାବନାକୁ ରହସ୍ୟାବୃତ କରି ପ୍ରକାଶ କରାଯାଉଥିଲା। ଏହି ପ୍ରକାର ଭାବନାକୁ ଆଧ୍ୟାତ୍ମିକବାଦ ମଧ୍ୟ କୁହାଯାଇପାରେ । ଭଗବାନ ଅଥବା ଜଗତ ସମ୍ପର୍କରେ ଅତ୍ୟନ୍ତ କୌତୁହଳ ଜନକ ଧାରଣାକୁ ମିଷ୍ଟିସିଜିମ୍ ଅର୍ଥରେ ଗ୍ରହଣ କରାଯାଏ । ସେଥିପାଇଁ ମିଷ୍ଟିକ୍‌ର ସଜ୍ଞା ହେଉଛି—One who believes in Spiritual apprehension of truths beyond the understanding.

ଭାରତୀୟ ପ୍ରାଚୀନ କବିମାନେ ଯେତେବେଳେ କୌଣସି ଅଜ୍ଞାତ ଅନନ୍ତ ଶକ୍ତିର ସନ୍ଧାନ ପାଇଁ ବ୍ୟାକୁଳ ହୋଇଛନ୍ତି ସେତେବେଳେ ରହସ୍ୟପୂର୍ଣ୍ଣ ଅଭିବ୍ୟକ୍ତି ମାଧ୍ୟମରେ ସାହିତ୍ୟ ରଚିତ ହୋଇଅଛି । ସାଧାରଣ ପାଠକ ନିକଟରେ ଏହି ଭାବନାର ସ୍ୱାଦ ଉପଲବ୍ଧି ସହଜସାଧ୍ୟ ନୁହେଁ । ଗୁରୁପରଂପରା ଜରିଆରେ ଏହି ରହସ୍ୟପୂର୍ଣ୍ଣ ଭାବନାକୁ ବୁଝିବାକୁ ହୁଏ । ବ୍ରହ୍ମ ପାଇଁ ଆତ୍ମାର ଅନନ୍ତ ପ୍ରେମ ଓ ବ୍ୟାକୁଳତା ଏହି କବିତାର ପ୍ରାଣବସ୍ତୁ । ସେମାନେ ଉପନିଷଦର ଭାଷାରେ ଜଗତକୁ ବ୍ରହ୍ମମୟ ମନେ କରନ୍ତି । ଈଶା ବାସ୍ୟମିଦଂ ସର୍ବମ୍ ।" ଏକମାତ୍ର ବ୍ରହ୍ମ ହେଉଛନ୍ତି "ସତ୍ୟ; ସମସ୍ତ ଜଗତ ଅଳୀକ ଏବଂ ମିଥ୍ୟା । ଅଦ୍ୱୈତବାଦୀ ଆତ୍ମା ଓ ବ୍ରହ୍ମକୁ ଅଭିନ୍ନ ଦେଖିଲେ ପରି ପ୍ରାଚୀନ ରହସ୍ୟବାଦୀ କବିମାନେ ଭକ୍ତ ଓ ଭଗବାନ ମଧ୍ୟରେ ଅଭିନ୍ନ ସଂପର୍କ ପ୍ରତିଷ୍ଠା କରିଥିଲେ । 'ବୌଦ୍ଧଗାନ ଓ ଦୋହା', ଉପନିଷଦ ଓ ସହଜିଆ ସାହିତ୍ୟରେ ଏହିଭଳି ଆଧ୍ୟାତ୍ମିକ ବିଚାରଧାରାର ତତ୍ତ୍ୱିକ ପରିଚୟ ମିଳିଥାଏ । ଓଡ଼ିଆ ସାହିତ୍ୟରେ ବୌଦ୍ଧଗାନ ଓ ଦୋହାରୁ ଆରମ୍ଭ ହୋଇ ପଞ୍ଚସଖା ଯୁଗର ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ ଅଥବା ବୈଷ୍ଣବ କାବ୍ୟ ସାହିତ୍ୟରେ ପ୍ରକୃତି ଓ ପୁରୁଷର ମିଳନ କଳ୍ପନାରେ ଏହି ରହସ୍ୟମୟୀ ଭାବନା ପ୍ରତିଷ୍ଠା ଲାଭ କରେ । ଏହାକୁ ବ୍ରହ୍ମବାଦ ଅଥବା ମରମବାଦ ଭାବରେ ଗ୍ରହଣ କରାଯାଇ ପାରେ । ପ୍ରାଚୀନ କବିମାନଙ୍କର ରହସ୍ୟବାଦ ଅନେକ ସମୟରେ ଦୁର୍ବୋଧ୍ୟ ଅଥବା ଦାର୍ଶନିକ ତତ୍ତ୍ୱଘଟିତ । ସେଥିପାଇଁ ବେଳେ ବେଳେ ଦୁର୍ବୋଧ ରଚନାକୁ ରହସ୍ୟବାଦର ରଚନା ବୋଲି ମତବ୍ୟକ୍ତ କରାଯାଇ ଥାଏ; କିନ୍ତୁ ମିଷ୍ଟିସିଜମ୍‌ର ଏହା ପ୍ରକୃତ ରୂପରେଖ ପ୍ରଦାନ କରେ ନାହିଁ ।

ରହସ୍ୟବାଦୀ କବି ଅତୀନ୍ଦ୍ରିୟ ଜଗତରେ ବିଚରଣ କରି ଆଧ୍ୟାତ୍ମିକତାର ପ୍ରଚାର କରିଥାନ୍ତି । ତାଙ୍କ ଆଧ୍ୟାତ୍ମିକତା ଅଧୁନିକ ମରମୀ କବିତାର ପ୍ରାଣଧର୍ମ ନୁହେଁ । ଆଧୁନିକ ମରମୀ କବି କାବ୍ୟ କବିତାର ମାଧ୍ୟମରେ କେବଳ ବୁଦ୍ଧିର କସରତ୍ ଅଥବା ଜ୍ଞାନର ଅହଂକାର କରେନାହିଁ, ଅପୂର୍ବ କଳ୍ପନା ବିଳାସିତା ଓ ଭାବୁକତାର ଉଜ୍ଜ୍ୱଳ ପ୍ରକାଶ ଦ୍ୱାରା ସେ ନିଜର ରଚନାକୁ ଅଧିକ ମନୋଜ୍ଞ କରିଥାଏ । ଆଧୁନିକ ମରମୀ ଭାବନାରେ ଭାବପ୍ରବଣତା, କଳ୍ପନା ବିଳାସିତା ଏବଂ ଦାର୍ଶନିକତାର ସାର୍ଥକ ସମନ୍ୱୟ ଦେଖାଯାଏ । ସାଧାରଣ ଭାବୁକ ବା କବି କେବଳ ବାହ୍ୟ ବସ୍ତୁରେ ଦୃଷ୍ଟି ନିବେଶ କଲାବେଳେ ମରମୀ କବି ତାହାର ଅନ୍ତର୍ନିହିତ ସୌନ୍ଦର୍ଯ୍ୟ ଉପଲବ୍ଧି କରେ । ମରମୀଭାବନା ସର୍ବଦା ଇନ୍ଦ୍ରିୟାତୀତ ଅବେଗ-ସମ୍ଭୂତ । ସତ୍ୟର ସନ୍ଧାନ ପାଇଁ ମିଷ୍ଟିକ କବି ଏହି ଆବେଗମୟୀ ଭାବନାର ଆଶ୍ରୟ ଗ୍ରହଣ କରେ ।

ମିଷ୍ଟିକ କବିମାନେ ସାଧାରଣତଃ ବ୍ରହ୍ମବାଦୀ, ବ୍ରହ୍ମବାଦୀଙ୍କର ଭାଷା ହେଉଛି ପ୍ରତୀକବାଦ । ସେମାନେ ବାହାରର ପ୍ରକୃତି ସଂସାରକୁ ଦେଖି ମୁଗ୍ଧ ହୁଅନ୍ତି ସତ, ତାହାର ବିଚିତ୍ର ରୂପଶୋଭାରେ କେବଳ ସନ୍ତୁଷ୍ଟ ହୁଅନ୍ତି । ସେମାନଙ୍କ ମତରେ ଏହି ପ୍ରକୃତିସଂସାର ମଧ୍ୟରେ ସମଗ୍ର ସୃଷ୍ଟିର ସତ୍ୟ ନିହିତ ରହିଅଛି । ତେଣୁ ମିଷ୍ଟିକ କବିତାରେ ଅନନ୍ତ ଓ ଅସୀମ ଭାବରାଶିର ସନ୍ଧାନ ମିଳେ; କ୍ଷୁଦ୍ର ମଧ୍ୟରେ ବିରାଟର ଅନୁଭବ ଆସେ । ରୂପ ମଧ୍ୟରେ ରୂପାତୀତର ସନ୍ଧାନ ଦେବା ମିଷ୍ଟିକ୍ କବିର ଧର୍ମ ।

ମିଷ୍ଟିକ୍ ଚିନ୍ତାଧାରାରେ ଏହି ବିଶ୍ଳେଷଣ ସ୍ମରଣକରି ଓଡ଼ିଆ ସାହିତ୍ୟରେ ପ୍ରାଚୀନ ବ୍ରହ୍ମବାଦୀ ଏବଂ ଆଧୁନିକ ମରମୀ କବିତାର

ଧାରୁ ଆଲୋଚନା କରିବାକୁ ହେବ । ଏହା ଦଶମ ଶତାବ୍ଦୀର ବୌଦ୍ଧଜ୍ଞାନ ଓ ଦୋହାଠାରୁ ଷୋଡ଼ଶ ଶତାବ୍ଦୀର ପଞ୍ଚସଖା ସାହିତ୍ୟ ବାଟରେ ଆଧୁନିକ ଯୁଗର ମଧୁସୂଦନ, କୁନ୍ତଳାକୁମାରୀ, ଲକ୍ଷ୍ମୀକାନ୍ତ, ବୈକୁଣ୍ଠ ନାଥଙ୍କ ପର୍ଯ୍ୟନ୍ତ ନାନା ଭାବରେ ପ୍ରବାହିତ ହୋଇ ଆସିଛି ।

କବିତା ରସଧର୍ମୀ ହେଲେହେଁ ଯେଉଁ ରସାପ୍ଲୁତ ଭାବନାରେ ମରମୀ ଭାବ ସଂଗୃହୀତ ହୋଇଥାଏ ସେହି ଶ୍ରେଣୀର କବିତା ରହସ୍ୟଧର୍ମୀ । ସାହିତ୍ୟ ସଂସାରରେ କବି ଚିରକାଳ ସେହି ଭୂମା ଓ ରୂପାତୀତ ସୌନ୍ଦର୍ଯ୍ୟର ଅନ୍ୱେଷଣ କରି ଆସିଛି । ଅସ୍କାର ଓ୍ୱାଇଲ୍ଡଙ୍କ ମତରେ "The mystical in art, the mystical in nature--this is what I am looking for," କଳା, ଜୀବନ ତଥା ବିଶ୍ୱପ୍ରକୃତିରେ ଏହି ଅଜ୍ଞାତପୂର୍ବ ଭାବର ସନ୍ଧାନ କରିଥାଏ । ସୀମା ମଧ୍ୟରେ ଅସୀମର, ରୂପ ମଧ୍ୟରେ ଅରୂପର ଆକର୍ଷଣ ହିଁ କବି ଓ କଳାକାରର ସବୁକାଳର ସାଧନା । ତେଣୁ ଇଂରେଜ କବି ସେଲି ତାଙ୍କର "The awful shadow of some unseen power Floats, though unseen, among us visiting. This various world with as constant wing, As summer winds that creep from flower to flower, (Intellectual Beauty) ସେ ଯାହା କହିଥିଲେ, କବିଗୁରୁ ରବୀନ୍ଦ୍ରନାଥ ତାଙ୍କର ଜୀବନସ୍ମୃତିରେ ସେହି କଥାର ପ୍ରତିଧ୍ୱନି କରିଛନ୍ତି ମାତ୍ର । ତାଙ୍କରି ଭାଷାରେ— "ଆମାର ତୋ ମନେହୟ, ଆମାର କାବ୍ୟରଚନାର ଏଇ ଏକଟି ମାତ୍ର ପାଲା—ସେ ପାଲାର ନାମ ଦେଓୟା ଯାଇତେ ପାରେ ସୀମାର ମଧ୍ୟେଇ ଅସୀମେର ସହିତ ମିଳନ ସାଧନେର ପାଲା ।"

ତେବେ ରହସ୍ୟବାଦ କଅଣ ? ସାହିତ୍ୟ ଯେତେବେଳେ ଜୀବ, ଜୀବନ ଏବଂ ଜଗତର ରହସ୍ୟ ସଂପର୍କରେ ଜିଜ୍ଞାସା ପ୍ରକାଶ କରି ନିଜର ଅନୁସନ୍ଧିତ୍ସା ପ୍ରବୃତ୍ତିର ଚରିତାର୍ଥତା ପାଇଁ ଚେଷ୍ଟାକରେ । ସେତେବେଳେ ପ୍ରକୃତ ରହସ୍ୟବାଦର ଅଭ୍ୟୁଦୟ ହୁଏ । ହିନ୍ଦି ସାହିତ୍ୟର ସମାଲୋଚକ ଶୁକ୍ଳଜୀଙ୍କ ମତରେ ରହସ୍ୟବାଦ ହେଉଛି—

'ଜ୍ଞାନ କେ କ୍ଷେତ୍ରମେ ଯେ ଅଦ୍ୱୈତବାଦ,<br>ଭାବ କ୍ଷେତ୍ରମେ ଓହୀ ରହସ୍ୟବାଦ ହୈ ।''

ଜ୍ଞାନରାଜ୍ୟରେ ଯାହାକୁ ଆମେ ଅଦ୍ୱୈତବାଦ ଅର୍ଥରେ ଗ୍ରହଣ କରୁ, ଭାବନା କ୍ଷେତ୍ରରେ ତାହା ରହସ୍ୟବାଦରୂପେ ପ୍ରକଟିତ ହୁଏ । ଏଥିରେ ମୋଟାମୋଟି ନିମ୍ନ କେତେଗୋଟି ମୌଳିକ ଭାବନା ଦୃଷ୍ଟିଗୋଚର ହୁଏ ।

(୧) ରହସ୍ୟବାଦୀ କବିତାରେ ବ୍ରହ୍ମ ଓ ଜୀବର ସଂବନ୍ଧ ନିରୂପିତ ହୋଇଥାଏ ।

(୨) ପ୍ରାକୃତିକ ସଂସାରର ବାହାରେ ଏକ ଅରୂପ ମହାନ ସତ୍ତାର ଉପଲବ୍‌ଧି ପାଇଁ ଅପାର ପ୍ରେରଣା ମିଳିଥାଏ ।

(୩) ଏହି ଶ୍ରେଣୀର କବିତାରେ ଏକ ଅଦୃଶ୍ୟ, ପରୋକ୍ଷ ସତ୍ତାପ୍ରତି ଆତ୍ମାର ବନ୍ଦନା ପ୍ରକାଶ ପାଏ ।

ସାହିତ୍ୟ କ୍ଷେତ୍ରରେ ଏହି ଆତ୍ମା ଓ ପରମାତ୍ମାର ତତ୍ତ୍ୱର ବୀରଯୁଗର ସାହିତ୍ୟରେ ବିରଳ କହିଲେ ଚଳେ । ମାତ୍ର ଭକ୍ତିଯୁଗର ସାହିତ୍ୟରେ ଆଧ୍ୟାତ୍ମିକତା ପ୍ରାଧାନ୍ୟ ଲାଭ କରିଥିବାରୁ ଆତ୍ମା ପରମାତ୍ମାର ସଂପର୍କ ଜନିତ ସିଦ୍ଧାନ୍ତ ରହସ୍ୟର ସଞ୍ଚାରକରେ ଏବଂ

ସେହି ଶ୍ରେଣୀର କବିତାରେ ଆମେ ରହସ୍ୟବାଦ ଅନୁସନ୍ଧାନ କରୁ । ଏହି ଭାବରେ ବୌଦ୍ଧଜ୍ଞାନ ଓ ଏହି କାଳର ରଚନାବଳୀ କିମ୍ବା ପଞ୍ଚସଖା ଯୁଗର ତନ୍ତ୍ର ପ୍ରଭାବିତ ଶୂନ୍ୟବାଦୀ ସାହିତ୍ୟ ଆମ୍ଭମାନଙ୍କର ପ୍ରଣିଧାନ ଯୋଗ୍ୟ ? କାରଣ ଏହି ଉଭୟ କାଳର ସାହିତ୍ୟରେ ଅଜ୍ଞାତ, ଅବ୍ୟକ୍ତ, ଏବଂ ନିଗୂଢ଼ ଶକ୍ତି ସମ୍ପୃକ୍ତ ଜିଜ୍ଞାସାର ସମାଧାନପାଇଁ ଉଦ୍ୟମ କରାଯାଇ ଅଛି ।

ଉଦାହରଣ ସ୍ଥଳରେ ଏଠାରେ ଓଡ଼ିଆ ସାହିତ୍ୟର ପ୍ରାଥମିକ ସ୍ତରର ରଚନା ରୂପେ ଦାବି କରାଯାଉଥିବା ବୌଦ୍ଧଗାନ ଓ ଦୋହାର ଏକ ଗୀତ ଆଲୋଚନା କରାଯାଇପାରେ । ବୌଦ୍ଧ ସିଦ୍ଧାଚାର୍ଯ୍ୟଗଣ ଜୀବ ଓ ପରମାତ୍ମା ସଂପର୍କରେ ତାଙ୍କ ସାଧନାର ସତ୍ୟକୁ ଅପ୍ରକାଶ୍ୟ କରିବା ପାଇଁ ରୂପକଧର୍ମୀ ରୀତିର ଆଶ୍ରୟ ଗ୍ରହଣ କରିଅଛନ୍ତି । ସିଦ୍ଧାଚାର୍ଯ୍ୟ କାହ୍ନୁପାଦଙ୍କର ଏକ କବିତା ଏଠାରେ ଉଲ୍ଲେଖ ଯୋଗ୍ୟ ।

ଯଥା— "ନଗର ବାହିରରେ ଡୋମ୍ବି ତୋହରି କୁଡ଼ିଆ
ଛୋଇ ଛୋଇ ଜାଇ ସେ ବାମ୍ହଣି ନାଡ଼ିଆ
ଆଲୋ ଡୋମ୍ବି ତୋଏ ସମ କରିବ ମ ସାଙ୍ଗ
ନିଘିଣ କାହ୍ନ କପାଳୀ ଜୋଇ ଲାଙ୍ଗ
ଏକ ସେ ପଦମା ଚୌଷଠି ପାଖୁଡ଼ି
ତହିଁ ଚଡ଼ି ନାଚେ ଜୋଗୀ ବାପୁଡ଼ୀ
ହାଲୋ ଡୋମ୍ବି ତୋ ପୁଛମି ସଦ୍‌ଭାବେ
ଅଇସସି ଯାଅସି ଡୋମ୍ବି କାହାରି ନାବେ ।"

ଏହି ଗୀତଟିର ଆକ୍ଷରିକ ଅର୍ଥହେଲା—ଡମଣୀର ଘର ନଗର ବାହାରେ ଅବସ୍ଥିତ । ସେଠାରେ ସେ କୁଡ଼ିଆଟିଏ

କରି ଅବସ୍ଥାନ କରେ । ସେ ବ୍ରାହ୍ମଣର ପାଣ୍ଡୁଆ ଛୁଇଁ ଛୁଇଁ ଯାଉଛି । ଡ଼ମଣି ହେବାର ମିଳନ ଦେବାପାଇଁ ଯୋଗୀ କାହ୍ନୁପାଦ ଅତ୍ୟନ୍ତ ବ୍ୟାକୁଳ । ସେ କହୁଛନ୍ତି ସେହି ଯୋଗୀ ଲୋକ । ଦୂଣି ଲଙ୍ଗଳା । ତାଙ୍କର ଭଲମନ୍ଦ ଜ୍ଞାନ ନାହିଁ । ତେଣୁ ଡ଼ମଣି ହଙ୍ଗେ ମିଳନରେ ତାଙ୍କର ଲଜ୍ଜା ବା ଘୃଣା ନାହିଁ । ଗୋଟିଏ ପଦ୍ମ, ଯାହିରେ ଚଉଷଠି ପାଖୁଡ଼ା ଅଛି । ଯୋଗୀ କାହ୍ନୁପାଦ ସେଠାରେ ନାଚୁଛନ୍ତି । ଯୋଗୀ କାହ୍ନୁପାଦ ପଚାରୁଛନ୍ତି— ଆଲୋ ଡ଼ମଣି ତୋତେ ବନ୍ଧୁଭାବରେ ପଚାରୁଛି । ତୁ କେଉଁବାଟେ ଆସୁଛୁ ଓ ଯାଉଛୁ । ମୋତେ ଭଲ କରି କହ ।

ବୌଦ୍ଧ ଜଗତରେ କାହ୍ନୁପାଦ ଜଣେ ପ୍ରସିଦ୍ଧ ସିଦ୍ଧ ଓ ସାଧକ । ସାଧାରଣ ପାଠକ ଏହି କବିତା ପାଠକରି ତାଙ୍କର କାମୁକତାର ପରିଚୟ ନେଇ କରିବ । ମାତ୍ର ଏହିକ ଲୌକିକ ଅର୍ଥର ଅନ୍ତରାଳରେ ଅତି ଗୂଢ଼ ଆଧ୍ୟାତ୍ମିକ ସତ୍ୟର ଯେ ପରିବେଷଣ କରାଯାଇଛି ତାହା ଗୁରୁ ପରଂପରାରେ ହିଁ ବୁଝାପାଇଥାଏ ।

ଏହି ଗୀତର ଆଧ୍ୟାତ୍ମିକ ମର୍ମ ହେଲା—ଏଠାରେ ଦେହହେଲା ନଗର ରୂପକ । ତାର ବାହାରେ କୁଡ଼ିଆ । ଅର୍ଥାତ୍ ସୁଷୁମ୍ନା ନାଡ଼ିରେ ଆମେ ପ୍ରଶ୍ୱାସ ନେଉନାହିଁ; ନେଇଥାଉ ଇଡ଼ା ପିଙ୍ଗଳା ନାଡ଼ିରେ । ସୁଷୁମ୍ନାର ମଧ୍ୟବର୍ତ୍ତୀ ନାଡ଼ି ବ୍ରହ୍ମନାଡ଼ି ନାମରେ ପରିଚିତ । ଯୋଗସାଧନା କରି ସହସ୍ରଦଳ କମଳ ନିକଟରେ ପହଞ୍ଚିଲେ ସାଧକର ବୈଷୟିକ ଜ୍ଞାନ ଲୋପ ପାଏ । ବ୍ରହ୍ମନାଡ଼ି ସ୍ପର୍ଶରେ । ଇଡ଼ା ପିଙ୍ଗଳାର ଗତିପଥ ଆମକୁ ଜଣାଥିଲେହେଁ ସୁଷୁମ୍ନା ନାଡ଼ିର ଗତିପଥ ଆମକୁ ଜଣା ନାହିଁ ।

ଓଡ଼ିଆ ସାହିତ୍ୟରେ ଭକ୍ତଯୁଗର ସାହିତ୍ୟକୁ ସାହିତ୍ୟ ଇତିହାସର ସୁବର୍ଣ୍ଣଯୁଗ ବୋଲି ନାମିତ କହଯାଇପାରେ । ଏହି ଯୁଗରେ ଜଗନ୍ନାଥ, ଯଶୋବନ୍ତ, ଅଚ୍ୟୁତାନନ୍ଦ, ବଳରାମ, ପ୍ରଭୃତି ଯେଉଁ ଅଧ୍ୟାତ୍ମିକ ତତ୍ତ୍ୱର ପରିବେଷଣ କବିତା ମାଧ୍ୟମରେ କରିଯାଇ ଅଛନ୍ତି, ତାହା ଶୂନ୍ୟବାଦ ନାମରେ ପରିଚିତ । ଏହି ଶୂନ୍ୟବାଦ ସଂପର୍କରେ ଶ୍ରୀଯୁକ୍ତ ମନୋରଞ୍ଜନ ରାୟ ଆଲୋଚନା କରିଲେଖିଛନ୍ତି "ନାଗାର୍ଜୁନର ମତେ ଜଗତେର ଶୁଧୁ ଘାଠନିକ ଅସ୍ତିତ୍ୱ ଆଛେ । ଏଖାନେ କିନ୍ତୁ କ୍ଷଣିକଓ ନୟ, ଶାଶ୍ୱତଓ ନୟ, ଏକଓ ନୟ, ପୃଥକଓ ନୟ, । ଉତ୍ପତ୍ତିଓ ନାଇ, ବିନାଶଓ ନାଇ, ଆସେଓ ନା ଯାୟଓ ନା, ଶୁଧୁ ଅଭ୍ୟାସ, ଶୁଧୁ ପ୍ରତିପଦ୍ୟମାନ । ଜଗତ ସମ୍ବନ୍ଧ ଓ ଗୁଣେର ଏକ ଆଦର୍ଶ ପ୍ରଥା । ଆମରା ସମ୍ବନ୍ଧେ ବିଶ୍ୱାସ କରି କିନ୍ତୁ ତାର ବୋଧଗମ୍ୟ ବ୍ୟାଖ୍ୟା ହତେ ପାରେନା, ନାରୀ ନାଇ ନର ନାଇ, ଜୀବନ ନାଇ, ସତ୍ତ୍ୱ ନାଇ, ଆତ୍ମାନାଇ, ସବଇ ଅବାସ୍ତବ । ସବଇ ଅନସ୍ତିତ୍ୱ, ସ୍ୱପ୍ନେରମତୋ ଆଲେୟାର ମତୋ ଜଲେ ସୂର୍ଯ୍ୟେର ପ୍ରତିବିମ୍ବେର ମତେ ଜନମା ବିଶ୍ୱ ହେତୁର ଫଲ ଛଡ଼ା କିଛୁ ନାଇ, ସବ ଶୂନ୍ୟତା । ବସ୍ତୁ ବଲେଛେନ ତା ଶୂନ୍ୟ ନୟ, ଅଶୂନ୍ୟ ନୟ, ଶୂନ୍ୟ, ଅଶୂନ୍ୟ, ଉଭୟ ନୟ, ଶୂନ୍ୟ ଅଶୂନ୍ୟ ଥେକେ ପୃଥକ ନୟ । ସେଇ ଚରମ ସତ୍ୟକେ ଚିହ୍ନିତ କରିବାର ଜନ୍ୟଇ ଶୂନ୍ୟ ବଲା ହୟ ।

ଶୂନ୍ୟମ୍ ଇତିବକ୍ତବ୍ୟମ ଅଶୂନ୍ୟମ୍
ଇତି ବା ଭବେତ୍

ଉଭୟମ୍ ନୋଭୟମ୍ ଚେତି ପ୍ରଜ୍ଞା
ପ୍ରତ୍ୟାରଥମ୍ ତୁ କଥ୍ୟତେ ।

(ମାଧ୍ୟମିକ ସୂତ୍ର

ଶୂନ୍ୟତା ଦ୍ୱାରା ଉତ୍ପତ୍ତି ସମ୍ଭବ ହୁଏ । ଶୂନ୍ୟତା ବ୍ୟତୀତ କିଛି ସମ୍ଭବ ହୁଏନା । ଅସ୍ତି, ନାସ୍ତି, ଉଭୟ ଅନୁଭୟ ଏହି ଚାରିଟି କୋଟି ଥେକେ ଶୂନ୍ୟତା ମୁକ୍ତ । ଜଗତେର ଏକମାତ୍ର ତତ୍ତ୍ୱ ଶୂନ୍ୟତା, ଶୂନ୍ୟତାର ଅସ୍ତିତ୍ୱ ବା ଅନସ୍ତିତ୍ୱ ନାଇ, ତା ଦେଖା ଓ ଯାୟନା, ଉପଲବ୍ଧି କରାଓ ଯାୟନା, ଆମରା ବର୍ତ୍ତମାନେ ଯେ ଯେ ବିଷୟ ଦେଖି, ତା ଅତୀତେଓ ଶୂନ୍ୟ, ଭବିଷ୍ୟତେଓ ଶୂନ୍ୟ; କାରଣ ତାର ସ୍ୱଭାବଧର୍ମ ଶୂନ୍ୟତା, ଅବିଦ୍ୟାର ଜନ୍ୟ ଯେ ଜିନିଷେର ଅସ୍ତିତ୍ୱ ନାଇ, ତାର ଅସ୍ତିତ୍ୱ ଆଛେ ବଲେ ମନେ ହୟ । ଅବିଦ୍ୟା ଦୂରହୋୟେ ଜ୍ଞାନ ହଲେଇ ଦେଖାଯାୟ କୋନଓ ଜିନିଷେର ଅସ୍ତିତ୍ୱ ନାଇ । ଅଭାବ ନୟ, ଅର୍ଜିତ ନୟ । ଯା ସବିଭ୍ରମ ନୟ, ଯା ଅବିନଶ୍ୱରମାୟ ଓ ଅସୃଷ୍ଟ, ତାଇ ନିର୍ବାଣ । ଦୃଶ୍ୟମାନେ ଜଗତେର ଯେ ଜ୍ଞାନ ତାକେ ସଂବୃତି ସତ୍ୟ ବଲାହୟ ତା ଅପେକ୍ଷିକ । ଶୂନ୍ୟତାର ଯେ ଜ୍ଞାନ ତା ହଛେ ପରମାର୍ଥ ବା ପରମ ଜ୍ଞାନ ।

ମାଧ୍ୟମିକ କାରିକାତେ ବଲା ହୟେଛେ: –

ଦ୍ୱେସତ୍ୟେ ସମୁପାଶ୍ରିତ୍ୟ ବୁଦ୍ଧାନାଂ ଧର୍ମଦେଶନାଂ
ଲୋକ ସଂବୃତି ସତ୍ୟଞ୍ଚ ସତ୍ୟଞ୍ଚ ପରମାର୍ଥତଃ ।

ବୁଦ୍ଧେର ଧର୍ମେ ଦୁଟି ସତ୍ୟ ଆଛେ । ଏକଟି ଲୌକିକ ବୁଦ୍ଧି ରୂପ ସଂବୃତ ଆର ଏକଟି ଶୂନ୍ୟ ରୂପ ପରମ ସତ୍ୟ । (୧)

ଏହି ଶୂନ୍ୟତା ରୂପକ ପରମଜ୍ଞାନକୁ ଲାଭ କରିବାପାଇଁ ପଞ୍ଚସଖା ଯୁଗର ସାଧକଗଣ ପ୍ରାଣାୟାମ ସାଧନା ଦ୍ୱାରା ସୁପ୍ତ କୁଣ୍ଡ-

୧—ଭଟ୍ଟାଚାର୍ଯ୍ୟ ଇତିବୃତ୍ତ—ପ୍ରଥମପର୍ବ ୧୯୫୪-ପୃ ୨୪୮-୪

ଲିମ୍ନା ଶକ୍ତିକୁ ଜାଗ୍ରତ କରନ୍ତି । ଏହି ମାର୍ଗରେ ସାଧନା କରି ସୁଷୁମ୍ନା ନାଡ଼ୀରେ ଷଡ଼ଚକ୍ର ଭେଦକରି ବଙ୍କନାଳ ବାଟେ ବ୍ରହ୍ମରନ୍ଧ୍ର ବା ସହସ୍ର କମଳରେ ପରମବ୍ରହ୍ମଙ୍କର ସାକ୍ଷାତ କରିବାକୁ ହୁଏ । ଏ ସାଧନାର ଧାରା ବୌଦ୍ଧଗାନ ଓ ଦୋହାଁ । ଅମଳରୁ ଚାଲି ଆସିଥିବା ଜଣାଯାଏ ।

ଶୂନ୍ୟପୁରୁଷ ସମ୍ପର୍କରେ ଆଲୋଚନା କରି ଗବେଷକ ଚିତ୍ତରଞ୍ଜନ ଦାସ ଲେଖିଅଛନ୍ତି ଯେ ଭାରତୀୟ କଳ୍ପନାରେ ଭାବ ଚିରଦିନ ବିଗ୍ରହରେ ପରିଣତ ହୋଇଛି । ତେଣୁ ପଞ୍ଚସଖା ଯେଉଁଠାରେ ଶୂନ୍ୟପୁରୁଷ ବା ନିରାକାର ପୁରୁଷ ବୋଲି କହି ଅଛନ୍ତି, ସେଠି କେବଳ ପୌତ୍ତଳିକତା ବା କେବଳ ସୂକ୍ଷ୍ମକଳ୍ପନା କଲେ ଭୁଲ ହେବ ।

ଶୂନ୍ୟସତ୍ତ୍ୱର ଶୁଦ୍ଧ ଭାବକୁ ବିଗ୍ରହ ଦେବାକୁ ଯାଇ ଏହି ପୁରୁଷ ବା ଦେବ କଳ୍ପନାସମ୍ଭୂତ ହୋଇଛି । ବୌଦ୍ଧତନ୍ତ୍ରର ଦେବ-ଦେବୀ ସମସ୍ତେ ଶୂନ୍ୟ ବାଚକ, ଅବଲୋକିତେଶ୍ୱର ଓ ପ୍ରଜ୍ଞାଦେବୀ, ଚେତନା ଓ ଶକ୍ତିଭାବରେ ବିଗ୍ରହୀ ମୂର୍ତ୍ତି । ବୈଷ୍ଣବ ସାହିତ୍ୟରେ ମଧ୍ୟ ଏହିଭାବରେ ବିଗ୍ରହ ଦାନକୁ ସବୁଠାରେ ସ୍ୱୀକାର କରାଯାଇଛି । ଅଚ୍ୟୁତାନନ୍ଦ ମଧ୍ୟ ଏହି ସର୍ବକାଳ ବ୍ୟାପୀ ଶୂନ୍ୟପୁରୁଷକୁ ନାନା ଗୁଣରେ ଭୂଷିତ କରି ଲେଖିଛନ୍ତି:—

ଭଲ ପଚାରିଲୁ ଗୁପତ ସନ୍ଧି ।
ଶୂନ୍ୟ ପୁରୁଷ ଶୂନ୍ୟପଦରେ ବନ୍ଦୀ ।
ଶୂନ୍ୟ ପୁରୁଷ ଉଦାସରେ ରହେ ।
ଶୂନ୍ୟ ପୁରୁଷ ମରୁମାୟା ବ୍ୟାପେ ।

ଶୂନ୍ୟ ପୁରୁଷ ଦୟାଳୁ ଅଟଇ ।
ଶୂନ୍ୟପୁରୁଷ ସର୍ବଘଟେ ରହ୍ଇ ।
ଶୂନ୍ୟପୁରୁଷ କରେ ନଟଘଟ ।
ଶୂନ୍ୟପୁରୁଷ ଜାଣେ ଛନ୍ଦ କୂଟ ।
ଶୂନ୍ୟପୁରୁଷ ଶୂନ୍ୟରେ ମାରଇ ।
ମାରି ଶୂନ୍ୟ ପୂର୍ଣ୍ଣ ଗତ କରଇ ।
ଶୂନ୍ୟପୁରୁଷ ଅଲଗେ ରହିଛି ।
ଶୂନ୍ୟ ପରେ ଖେଳି ଲୀଳା କରୁଛି ।

ଶୂନ୍ୟ ସଂହିତା—ପୃ୫୨

ନାନା ଗୁଣର କଳ୍ପନା କରାଯାଇ ପରମ ସତ୍ତ୍ୱ ବା ଶୂନ୍ୟ-ପୁରୁଷ ଯେ ସବ ଶକ୍ତିମାନ—ଏହାକୁଁ ଅଚ୍ୟୁତାନନ୍ଦ ଦର୍ଶାଇ ଦେଇ ଅଛନ୍ତି । ¹

ସର୍ବଶକ୍ତିମାନ ଅଲେଖ ପୁରୁଷ ଏବଂ ଶୂନ୍ୟ ମଧ୍ୟରେ କୌଣସି ପ୍ରଭେଦ ନାହିଁ ବୋଲି ବୈଷ୍ଣବ କବି ଚୈତନ୍ୟଦାସ ଅନୁଭବ କରିଛନ୍ତି । ତେଣୁ ସେ କହନ୍ତି—

'ଶୂନ୍ୟ ସଙ୍ଗତେ ଶୂନ୍ୟ ସେ ଶୂନ୍ୟେ ଶୂନ୍ୟରୂପୀ
ଶୂନ୍ୟ ସଙ୍ଗତେ ମିଶିଅଛି ସକଳ ସ୍ଥାନେ ବ୍ୟାପି ।
ଶୂନ୍ୟ ସେ ତାହାର ଅଟଇ ନିଜଘର
ଶୂନ୍ୟରେ ଥାଇ ଶୂନ୍ୟେ କରଇ ବିହାର ।

(ବିଷ୍ଣୁଗର୍ଭ ପୁରାଣ)

---

(୨) ଅଚ୍ୟୁତାନନ୍ଦ ଓ ସନ୍ଥସନାଧର୍ମ—ପୃ୧୪

ଆମର ପ୍ରାଚୀନ ସାହିତ୍ୟିକଗଣ ଆଧ୍ୟାତ୍ମିକ ବିଗ୍ରହ ଗୁଡ଼ିକୁ ସିଧାସଳଖ ପ୍ରମାଣ ନକରି ପ୍ରତୀକାତ୍ମକ କରିଅଛନ୍ତି । ପଞ୍ଚସଖାଙ୍କର ସାଧନାରେ ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱର ବର୍ଣ୍ଣନା ଏହାର ରୂପକଧର୍ମୀ । ରହସ୍ୟବାଦର ସର୍ବଶ୍ରେଷ୍ଠ ପ୍ରକାଶ ହେଲା ପ୍ରକୃତି ଓ ପୁରୁଷର ନିବିଡ଼ ସଂପର୍କ ଜନିତ ବିଶ୍ଳେଷଣରେ । ରହସ୍ୟବାଦୀ କବିଗଣ ଆତ୍ମା ଏବଂ ପରମାତ୍ମା ମଧ୍ୟରେ କୌଣସି ପାର୍ଥକ୍ୟ ଉପଲବ୍ଧ କରନ୍ତି ନାହିଁ । ପଞ୍ଚସଖା ସାଧକ ଅଚ୍ୟୁତାନନ୍ଦ କହିଅଛନ୍ତି –

"ଜୀବ ଆତ୍ମା ସ୍ୱଧେ ବୋଲି ପରମ ମୁରାରି" ୩

ବୈଷ୍ଣବ ସାହିତ୍ୟରେ ରାଧାକୃଷ୍ଣଙ୍କର ଲୀଳା ଖେଳାର ଯେଉଁ ବର୍ଣ୍ଣନା ଦିଆଯାଇଛି, ତାହାକୁ ସାଧାରଣ ପାଠକ ଲୌକିକ ଧର୍ମ ଦୃଷ୍ଟିରେ ବିଚାର କରି ବେଳେ ବେଳେ ବିଚଳିତ ହୁଏ । ମାତ୍ର ଅଧ୍ୟାତ୍ମିକ ବିଶ୍ଳେଷଣ ଦ୍ୱାରା କୃଷ୍ଣଙ୍କୁ ପରମ ପୁରୁଷ ଏବଂ ରାଧାଙ୍କୁ ଆରାଧନାକାରିଣୀ ଶକ୍ତି ବୋଲି କଳ୍ପନା କରାଯାଇଛି । ତେଣୁ ଭକ୍ତକବି ଜଗନ୍ନାଥ ଦାସ କଳ୍ପନା କରିଛନ୍ତି –

"ଏକାଙ୍ଗ ବ୍ରହ୍ମରୂପ ହୋଇ
ରାଧିକା ସଙ୍ଗେ ଭାବଗ୍ରାହି
ଗୋଲକ ନିତ୍ୟ ଏହା କହି
ଶୂନ୍ୟ ଦେଉଳ ଏ ବୋଲାଇ ।" ୪

---

୩ ଶୂନ୍ୟ ସଂହିତା—୨ୟ ଅଧ୍ୟାୟ
୪ ତୁଳାଭିଣା—ଜଗନ୍ନାଥ ଦାସ

ପିଣ୍ଡରେ ବ୍ରହ୍ମାଣ୍ଡର ପରିକଳ୍ପନା କେବଳ ଓଡ଼ିଶାର ବୈଷ୍ଣବ ସାଧକଗଣ ପ୍ରଚାରକରି ଯାଇନାହାନ୍ତି, କବୀର, ନାନକଙ୍କଭଳି ତତ୍କାଳୀନ ଅନ୍ୟପ୍ରାନ୍ତର ବୈଷ୍ଣବ ସାଧକଗଣ ମଧ୍ୟ ସମସ୍ୱରରେ ଘୋଷଣା କରିଅଛନ୍ତି । ପଞ୍ଚସଖା ସାଧକ ବଳରାମଦାସ ପିଣ୍ଡବ୍ରହ୍ମାଣ୍ଡର କଳ୍ପନାକରି ଲେଖିଛନ୍ତି—

"ଯାହା ଦେଖୁଛୁ ଏ ବ୍ରହ୍ମାଣ୍ଡେ
ସମସ୍ତ ଅଛୁ ଏହି ପିଣ୍ଡେ
ବ୍ରହ୍ମାଣ୍ଡେ ଯେତେକ ଭିଆଣ
ପିଣ୍ଡରେ ଅଛଇ ସେମାନ । ୪

ଏହି ଦେହ ମଧ୍ୟରେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳଠାରୁ ଆରମ୍ଭ କରି ରାମାୟଣ ମହାଭାରତ ପର୍ଯ୍ୟନ୍ତ ସମସ୍ତ କିଛି କଳ୍ପନା କରାଯାଇଛି ।

ଏହି ଆତ୍ମାପକ୍ଷୀର କଥା ହିନ୍ଦୀ ସାହିତ୍ୟର କବୀରଙ୍କର ଏକ କବିତାର ଇଂରେଜି ଭାବାନ୍ତରରୁ ଉପଲବ୍ଧି କରାଯାଇପାରେ ।

"On the Tree is a bird: it dances in the joy of life,

No one knows whence it is, nor what the burden of its music may be?

Where the branches throw a deep shade, there does it have its nesti and it comes in the evening and flies away in the morning and says

not a word of that which it knows. No one can tell me of this bird that

---

୪ । ଅମର କୋଷ ଗୀତ—ଦ୍ୱିତୀୟ ଅଧ୍ୟାୟ

sings within me......................

It dwells within the unattainable, the infinite and the Eternal, and no one marks when it comes and goes.

Kabir says; 'O brother sadhu' deep is the mystery. let wisemen seek to know where rests the bird.

ପ୍ରାଚୀନ ରହସ୍ୟବାଦୀ ସାହିତ୍ୟରେ ଏହି ପ୍ରତୀକ ଭାବନାର ବହୁର ଭିନ୍ନ ଭିନ୍ନ ରୂପରେ ଦେଖିବାକୁ ମିଳେ । ମହିମାଧର୍ମର ବାଲ୍ୟଲୀଳା ପ୍ରସଙ୍ଗ ଏ କ୍ଷେତ୍ରରେ ଅଧିକ ପ୍ରଣିଧାନ ଯୋଗ୍ୟ । "ବାଲ୍ୟ ଲୀଳାର ଅନୁଷ୍ଠାନ ପଛରେ ଗଭୀର ଦାର୍ଶନିକ ତତ୍ତ୍ୱ ନିହିତ ଥିବାର ଅନୁମିତ ହୁଏ । ଭାରତୀୟ ସାଧନାର ଇତିହାସରେ ଶିଶୁ ଶବ୍ଦଟି ଅତି ପରିଚିତ । ପ୍ରକାଶ ଓ ବିମର୍ଷ ର ଦ୍ୱିରୂପ ବୈସ୍ୟାକୁ ଅତିକ୍ରମ କରାଇ ପରଂବ୍ରହ୍ମଙ୍କର ଅନନ୍ତ ରୂପର କଳ୍ପନା କରାଯାଇଥାଏ । ଏହି ଅନନ୍ତ ରୂପ ହେଉଛି ଶିଶୁରୂପ × × ପରମ ସତ୍ତ୍ୱଙ୍କୁ ଏହି ଶିଶୁ ରୂପରେ ବର୍ଣ୍ଣନା କରିବାର ଦୃଷ୍ଟାନ୍ତ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟ ଦର୍ଶନରେ ଦେଖିବାକୁ ମିଳେ । ଏକ ଚପଳମତି ବାଳକ ପରି ସୃଷ୍ଟିକର୍ତ୍ତା ଅନାଦିକାଳ ଦାଣ୍ଡରେ ବସି କ୍ଷଣେ ଭାଙ୍ଗୁଛନ୍ତି, କ୍ଷଣେ ଗଢ଼ୁଛନ୍ତି, ଏହାହିଁ ଭାରତୀୟ ବିଦ୍ୟାର ଅଦ୍ଭୁତ କଳ୍ପନା । ଗ୍ରୀସ୍ ଦେଶର ପ୍ରାଚୀନ ଦାର୍ଶନିକ ହେରାକ୍ଲିଟସ୍ ମଧ୍ୟ ଏହିପରି ଏକ ବାଳକର ବର୍ଣ୍ଣନା ଦେଇଛନ୍ତି । Eternity is a child at play, it is the reign of a child"—Herachitus, quoted in christianity As mystical Fact: Stiner. P.45

ଭୀମ ଭୋଇଙ୍କ ଭାଷାରେ—

ବାଳକ ପରାୟେ ହୋଇ
ଅବନା ମଧ୍ୟରେ ଥାଇ
ବାହାର ନୁହେ । (ଭଜନମାଳା-ଦ୍ୱିତୀୟପୃଶତକ ପୃ ୮୪)

ମହିମାଧର୍ମର ବାଳଲୀଳା ଏହି ବାଳକରୂପ କାଳାତୀତ କଳ୍ପନାତୀତ କହଯାଇ ପାରେ ।" । ୬ ।

ସମାଜର ସାଧାରଣ ଲୋକେ ତତ୍ତ୍ୱଜ୍ଞାନକୁ ଗ୍ରହଣ କରିବା ସହଜ ନୁହେଁ । ତେଣୁ ତାନ୍ତ୍ରିକ କବିଗଣ ନାନା ପ୍ରତୀକ-ଭାବନାରେ ଜୀବ ଓ ପରମର ତତ୍ତ୍ୱକୁ ବୁଝାଇଛନ୍ତି ଏବଂ ପୂର୍ବରେ କାହାଣୀ ଗୁଡ଼ିକୁ ନୂତନ ଦୃଷ୍ଟିରୁ ମଧ୍ୟ ବିଶ୍ଳେଷଣ କରିଛନ୍ତି । ଏଠାରେ ଭକ୍ତକବି ବଳରାମ ଦାସଙ୍କ ବ୍ରହ୍ମାଣ୍ଡଭୂଗୋଳ ବିବେଚ୍ୟ । ଆଲୋଚ୍ୟ ପୁସ୍ତକରେ ଅର୍ଜୁନ ଓ ଭଗବାନଙ୍କ ପ୍ରଶ୍ନୋତ୍ତର ଛଳରେ ବହୁ ପୌରାଣିକ କାହାଣୀର ତାତ୍ତ୍ୱିକ ବିସ୍ତର ଦେଖିବାକୁ ମିଳେ । ଉଦାହରଣ ସ୍ୱରୂପ —

"କପୋତ କପୋତୀ ବାଳକ । ପଦ୍ମନେତ୍ର ଚକ୍ରୀ ଲୁବ୍ଧକ ।
ଶବର ଜାଲରେ ପଡ଼ିଲ । ଏକଥା ସଂଶୟ ଲଗିଲ ।
କପୋତ କପୋତୀ କେ ପୁଣ । ବାଳକ କେହୁ ତା ପ୍ରମାଣ
ଶବର କେଉଁଠାରେ ଥିଲ । ଆହାର କେହୁ ବୋଲାଇଲ ।
ଜାଲ ବୋଲିଣ ଏ କେମନ୍ତ । ବୃକ୍ଷଧରଟି କେହୁ ତନ୍ତ୍ର ।
ବୃକ୍ଷ ଯେ କେଉଁଠାରେ ଥିଲ । ବନ କେମନ୍ତ ବୋଲ ବଳ
ଏ ଅର୍ଥ ଫେଡ଼ ମୋତେ କହ । ମନରୁ ଫେଡ଼ ମୋ ସନ୍ଦେହ

୬ । ଓଡ଼ିଶାର ମହିମାଧର୍ମ— ଶତ୍ରୁଘ୍ନ ଦାସ—୧୯୫୨-୮୧୮୨

**ଭଗବାନ ଉବାଚ—**

ଶୁଣ ଅର୍ଜୁନ ମନଦେଇ । ଉତ୍ତମ ଶିଷ୍ୟ ଗୁରୁ କହି
ବୃକ୍ଷ ବୋଲିଣ ଦେହ ଜାଣ । ଜୀବ ପରମ ପକ୍ଷୀ ପୁଣ ।
ଜୀବଙ୍କ କପୋତି ହୋଇଲା । କପୋତ ପରମ ହୋଇଲା
ଏ ବୃକ୍ଷେ ବେନି ପକ୍ଷୀ ଥାନ୍ତି । ଏକ ଆରେକ ବନ୍ଧରନ୍ତି ।
ପରମ ଶୂନ୍ୟ ତାର ବାସ । ସକଳ ଘଟେ ସେ ଉଦାସ ।
ନିରତେ ପକ୍ଷୀରୂପ ଥାଇ । ବାସନା ସ୍ରୋତେ ନେ ଖଇ
ଗ୍ରାମ ନାମଟି ତାହାଙ୍କର । ସାକ୍ଷ ସ୍ୱରୂପେ ତା ବିହାର
କପୋତି ମାୟାରେ ବନ୍ଧରେ । ନିରତେ ନାନା କର୍ମ କରେ
ମତ୍ତ ଗର୍ବରେ କର୍ମ କରି । ପ୍ରତି ସଙ୍ଗମେ ନିତ୍ୟ ପଡ଼ି
ଏମନ୍ତେ ପ୍ରାଣୀ ଯାକ ନାଶ । ଶୁଣ ଅର୍ଜୁନ ଜ୍ଞାନରସ
ପ୍ରଳୟ କାଳର ଏ କଥା । ଶୁଣି ତାକୁ ତୁ ପାମରଥା
କାଳଟି ଶବରକୁ କହି । ସନ୍ଧି ମାରଟି ଜାଲ ହୋଇ
ବେନି ବାଣକ ଚକ୍ଷୁ ପୁଣ । ଆହାର ଗ୍ରାସଟି ଜାଣ ।
ଏ ଦେହ ବନ ବୋଲି କହି । କର୍ଣ୍ଣ ନାସିକା ବାଗ ହୋଇ
ସନ୍ଧି ପାତଟି ଆକାଶ । ଏମନ୍ତେ ପ୍ରଳୟ ହୁଅଇ ।
ମୁଖ ନାସିକା ଚକ୍ଷୁ କର୍ଣ୍ଣ । ଏ ସ୍ୱଦ୍ୱାର ବୋଲି ଅନ୍ୟ ।
ଗ୍ରାସ ବେଦଙ୍କି ହଜାଇଲା । ଜୀବ ପରମ ଖୋଜିଗଲା
ଜୀଅଁ ଚୈତନ୍ୟ ବେନିବାଳେ । ଏବେ ପଳାନ୍ତ ପଇଁ ଜାଲେ ।
କପୋତ କପୋତି ମିଳନ୍ତି । ସ୍ୱର ବାଗକୁ ସେ ଗମନ୍ତି ।
ସମସ୍ତେ ବୃକ୍ଷ ଗୁଡ଼ିଗଲେ । ଓଁକାର ଶବଦେ ମିଳିଲେ ।
ଶବର ଦେନି ଚଳିଗଲା । ନିଜ ଭୂବନରେ ଶୋଇଲା ।

---

୬ । ବ୍ରହ୍ମାଣ୍ଡ ଭୂଗୋଳ···ଷଠଚତ୍ୱାରିଂଶ ଅଧ୍ୟାୟ ।

ଏତ ଗଲା ପ୍ରାଚୀନ ଯୁଗର ସାହିତ୍ୟର କଥା । ଧର୍ମ୍ମର ଧାରଣାହିଁ ସେ ଯୁଗର ସାହିତ୍ୟରେ ଅଧିକ ପ୍ରବଳ । ମାତ୍ର ଆଧୁନିକ ସାହିତ୍ୟରେ ରହସ୍ୟ ବ୍ୟଞ୍ଜକ ଭାବନାର ଅଭାବ ନାହିଁ । ଏହାର ପ୍ରେରଣା ଆଧ୍ୟାତ୍ମିକତା ନୁହେଁ । ଭାବନାର ଆବେଗରେ କବି ଅରୂପ ଅଦୃଶ୍ୟ ରାଜ୍ୟ ସହିତ ଯେଉଁ ସମ୍ପର୍କ ପ୍ରତିଷ୍ଠା କରିଛନ୍ତି ତାହା ପାଠକ ନିକଟରେ ରହସ୍ୟମୟ ବୋଧ ହୋଇଅଛି । ଏହି ପ୍ରସଙ୍ଗରେ ଭକ୍ତକବି ମଧୁସୂଦନ । କାନ୍ତକବି ଲକ୍ଷ୍ମୀକାନ୍ତ ଏବଂ ବୈକୁଣ୍ଠନାଥ ପ୍ରଭୃତି କବିମାନଙ୍କର କବିତା ଉଲ୍ଲେଖ ଯୋଗ୍ୟ ।

ଭକ୍ତକବି ମଧୁସୂଦନ କଳ୍ପନା ନୟନରେ ବୈଦିକ ଯୁଗର ସରସ୍ୱତୀ ନଦୀକୂଳରେ ବୈଦିକ ଋଷିର ଦେଖି ଦିବ୍ୟ ତେଜୋମୟ ମୂର୍ତ୍ତି କଳ୍ପନା କରି ଲେଖିଛନ୍ତି—

"ଅମୂର୍ତ୍ତ ମୂରତି ଆହା ରୂପ ନିରୁପମ
ଅନନ୍ତ ଅକଳ, ବ୍ୟାପି ସ୍ଥାବର ଜଙ୍ଗମ
ଦେଶ କାଳାତୀତ ଦୃଶ୍ୟ କଳ୍ପନା - ଅତୀତ
ଅଥିର ଜ୍ୟୋତିରେ ଜ୍ୟୋତି ଚକ୍ଷୁ ଅପ୍ରେକ୍ଷିତ ।"

( ଋଷିପ୍ରାଣେ ଦେବାବତରଣ )

କବି ସଂସାରେ ମାୟାଜାଲ ବନ୍ଧନରେ ବାନ୍ଧିହେବାକୁ ଆଗ୍ରହୀ ନୁହେଁ । ଏହି ମାୟାଜାଲକୁ ଛିନ୍ନକରି ସେ ଅଜ ନିଜର ଲକ୍ଷ୍ୟ ପଥରେ ଯିବାପାଇଁ ସ୍ଥିର ସଂକଳ୍ପ । ତେଣୁ ସେହି ଅରୂପ ରାଜ୍ୟର ଆହ୍ୱାନ କବିଙ୍କୁ ବିଚଳିତ କରିବା ସ୍ୱାଭାବିକ । ମିଷ୍ଟିକ କବି ରବୀନ୍ଦ୍ରନାଥ ସେହି ବଂଶୀଧ୍ୱନି ଶୁଣିପାରି ଗାଇଥିଲେ—

"ଆମ'ର ଆର ହବେନା ଦେଖା
ଆମି ଶୁନେଛି ଏଇ ବା ଜ ତୋମାର ଭେଷା"
( ଗଚାଞ୍ଜଲୀ )

ଆଧୁନିକ ଯୁଗ କାନ୍ତକବ ଲକ୍ଷ୍ମୀକାନ୍ତ ସେହ ଅହ୍ୱାନରେ ବଚଳଚ ହୋଇ ଗାଇଛନ୍ତି—

"କଏସେ ଡାକୁଛି ନଈ ସେ ପାରରେ
ଚହ୍ନି ରହ୍ ନେକେ ବାଗରେ
ହୋ ହୋ ଶବ୍ଦାସ୍ୱର ଶୁଣିଥିଲ ପର
କେତେ ଯୁଗ ଯୁଗ ଆଗରେ
କେଉଁ ଜହାଜରେ ଥାଇ ସେ ଡାକୁଛି
ଖଣ୍ଡି ସ୍ୱର ତାର ନହେଜଛି ବୁଝି
କେଉଁ ଗୁହାରେ ହୋଇ ଆସିଛି
କେଉଁ କାପ୍ତିଆ ସାଗରେ ।
( ଜୀବନ ସଙ୍ଗୀତ )

ପୃଥିବୀକୁ କୋରଇ ଆ ସ । ହୋର ଅଗନଗରେ ସୁନ୍ଦର ଧରଣୀ ଶବୁଜଶ୍ରୀ ଧାରଣ କରେ । ପ୍ରକୃତିର ସସାର-ର ନୂତନ ଲୀଳା ଖେଳା ଦୃଷ୍ଟି ହୁଏ । ମରମୀ କବି ରବୀନ୍ଦ୍ର, ସେହି ଝର ଝର ବର୍ଷାର ସଙ୍ଗୀତରେ ଶୁଣି ମାତ୍ସ ପାଇଛନ୍ତି—

"ଏ ଆସେ ଏ ଅତ ଭୈରବ ହରଷେ
ଜଲ ସଞ୍ଚିତ କ୍ଷିତି ସୌରଭ ରଭସେ
ଘନ ଗୌରବେ ନବ ଯୌବନ ବରଷା

ଶ୍ୟାମ ଗମ୍ଭୀର ସରସା
ଗୁରୁ ଗର୍ଜନେ ନୀଳ ଅରଣ୍ୟ ଶିହରେ
ଉଠିଲା କଳାପୀ କେକା-କଳରବେ ବହରେ !
ନିଖିଳ ଚିତ୍ତ ହରଷ
ଘନ ଗୌରବେ ଆସିଛୁ ମତ୍ତ ବରଷା ।
( ବର୍ଷାମଙ୍ଗଳ—କଳ୍ପନା )

କବି ବୈକୁଣ୍ଠନାଥ ମଧ୍ୟ ତାଙ୍କର 'ବର୍ଷା ବରଣ' କବିତାରେ ବର୍ଷାର ମେଘକୁ ଚିତ୍ର କରିଛନ୍ତି । ଅମୃତର ଉତ୍ସ ରୂପରେ । ତାଙ୍କ ମତରେ ବର୍ଷା ହେଉଛି ନୂତନ ଜୀବନର ବାହକ । ତାହାର ଆଗମନରେ ନିର୍ଜନ, ନିସ୍ତେଜ, ମୃତ ସଂସାରରେ ନୂତନ ଜୀବନର ସଞ୍ଚାର ହୁଏ । ବର୍ଷା ଆସେ ନୂଆ ଆଶାର ପ୍ରତୀକ ଭାବରେ । ସତେ ଯେପରି କି ବର୍ଷୁକ ମେଘ ନୂତନ ସୁଖାଲୋକର ବାର୍ତ୍ତା ବହନ କରେ । ତେଣୁ ସେ ଯେତେବେଳେ ମେଘକୁ ଆହ୍ୱାନ କରନ୍ତି—

'ତପ୍ତ ବିକଳ ଏଇ ଧରଣୀ
ଶୂନ୍ୟ ଗଗନ ଦୂର ସରଣୀ
ଶ୍ରୀହୀନ ବଦନ କେ ରମଣୀ
ଆଗମନ ପଥେ ମେଲି ବାସ
ଡାକେ ଆସେ, ଘନ ଆସ ।"
(ବର୍ଷାବରଣ-କାବ୍ୟ ସଞ୍ଚୟନ)

ଏଠାରେ ମେଘର ଆହ୍ୱାନର ଅନ୍ତରାଳରେ ରସବର୍ଷୀ ଶକ୍ତିଧର ଦେବତାର ଆବାହନୀ କରାଯାଇଛି ବୋଲି ମନେହୁଏ ।

ସେହିପରି ବୈକୁଣ୍ଠ ନାଥ ତାଙ୍କର ଯାତ୍ରା ସଙ୍ଗୀତରେ ନିରୁଦ୍ଦେଶ୍ୟ ଯାତ୍ରାର କଥାହିଁ ସ୍ମରଣ କରନ୍ତି । ମଣିଷ ହେଉଛି ଏହି ପୃଥିବୀରେ ଜଣେ ପାନ୍ଥ । ତାହାର ଯାତ୍ରାର ସୀମାନାହିଁ ଜନ୍ମଜନ୍ମାନ୍ତର ଧରି ତାର ଏ ଯାତ୍ରା ଅବିରାମ ଗତିରେ ଚାଲିଛି । ଏ ଯାତ୍ରା ଅସୀମ ଏବଂ ଅନନ୍ତ । ଏ ଯାତ୍ରାର ଉଦ୍ଦେଶ୍ୟ ହେଉଛି ଅମୃତର ସନ୍ଧାନ । ରବୀନ୍ଦ୍ରନାଥ ଏହି ଅରୂପ ରାଜ୍ୟର ଉଦ୍ଦେଶ୍ୟରେ ଲେଖିଛନ୍ତି—

"ଆମି ଚଞ୍ଚଳହେ, ଆମି ସୁଦୂରେର ପିୟାସୀ" ତାହାର ପ୍ରତିଧ୍ୱନି ହିଁ ବୈକୁଣ୍ଠଙ୍କ ଯାତ୍ରାସଙ୍ଗୀତରେ ସେହି ସୁଦୂର ରାଜ୍ୟର ଆବେଦନ ଆମ୍ଭେମାନେ ଶୁଣିବାକୁ ପାଉ । ସେ ଏହି ମୋହମାୟାପୂର୍ଣ୍ଣ ସଂସାରର ଆଶକ୍ତିକୁ ଛିନ୍ନ କରି ପଳାଇ ଯିବାକୁ ବ୍ୟାକୁଳ ।—

"ମାନସ ହଂସ ମୁଁ ମାନସେ ଯିବି ଉଡ଼ି
ମୋ ଦୋଷେ ପଥ ହୁଡ଼ି ଭରମେ ଅନ୍ତରତ ।"

ସେହି ବୃହତ୍ତର ଚେତନା ଏବଂ ସତ୍ୟ ଆଡ଼କୁ ଅଗ୍ରସର ହେଉ ହେଉ କବି ଶୁଣିଛନ୍ତି—

"ପରାଣ କୁଞ୍ଜେ ଗୋ ତାରି ନୂପୁରଧ୍ୱନି
ପରାଣ ପବନେ ଗୋ ତା ଶୁଭ ଆଗମନି
ଜୀବନେ ଦେବା ନେବା ଭିଆଣେ ସବୁତାର
ସେ ମହାଦାନୀ ହସେ
ପସ୍ତଣେ ଦେଖିନାହୁଁ ।"

ତେବେ ଅଧିକାଂଶ ମରମୀ କବିତା ପାଠ କରି କେହି କେହି ତାହାକୁ ରୋମାଣ୍ଟିକ ରଚନା ବୋଲି ଭ୍ରମ କରିପାରନ୍ତି । ରୋମାଣ୍ଟିକ କବି ବସ୍ତୁ ପ୍ରବନ୍ଧରେ ଦୃଷ୍ଟିରେ ଯାହାର ସଂଦର୍ଶନ କରିବ. ମରମୀକବି ତାହାକୁ ଜୀବନର ଅନ୍ତରତମ ପ୍ରଦେଶରେ ଅନୁଭବ କରେ । କାନ୍ତକବି ଲକ୍ଷ୍ମୀକାନ୍ତଙ୍କର "ଜୀବନ ସଂଗୀତ"ର ବହୁ କବିତା ଏବଂ ବୈକୁଣ୍ଠନାଥଙ୍କ 'ବାସର ଗୃହ' 'ଚାନ୍ଦମାଳା' ବା 'ବିବର୍ଣ, ଶିଶୁମୃତ୍ୟୁ ପ୍ରଭୃତି କବିତା ପାଠ କଲେ ଏହା ଉପଲବ୍‌ଧି କରିହେବ । ମରମୀ ରଚନା ବସ୍ତୁର ଓ ଜଗତର ଅପେକ୍ଷା ରଖେନାହିଁ । ତାହା ଏକ ଅପୂର୍ବ ଅନୁଭୂତି । ସୀମାହୀନ ଅପରୂପର ସ୍ୱାଦ ଗ୍ରହଣ, ଏକ ଦିବ୍ୟ ଅନୁଭୂତି କହିଲେ ଠିକ୍ ହେବ ।

ସବୁକାଳରେ ଚିରନ୍ତନ କବିତାର ଏହାହିଁ ହେଉଛି ପ୍ରାଣଧର୍ମ ।

—x—

## ଜୟଦେବ ବଙ୍ଗାଳୀ କି ଓଡ଼ିଆ

କବି ଜୟଦେବ ସଂସ୍କୃତରେ 'ଗୀତଗୋବିନ୍ଦ' ରଚନା କରି ଆଜି ପୃଥିବୀ ବିଖ୍ୟାତ ହୋଇଅଛନ୍ତି । ଏହି ଗ୍ରନ୍ଥ ପୃଥିବୀର ପ୍ରାୟ ପ୍ରଧାନ ପ୍ରଧାନ ଭାଷାମାନଙ୍କରେ ଅନୂଦିତ ହୋଇ ଅପୂର୍ବ ଖ୍ୟାତି ଓ ଲୋକପ୍ରିୟତା ଅର୍ଜନ କରିଅଛି । ସଂସ୍କୃତ ର ଏକାଧିକ ଜୟଦେବ ନାମ କବି ଅଛନ୍ତି । ସେମାନଙ୍କ ମଧ୍ୟରେ "ଶୃଙ୍ଗାର ମାଧବୀୟ ଚମ୍ପୂ"ର ପ୍ରଣେତା ଜୟଦେବ ଓ "ଚନ୍ଦ୍ରାଲୋକ ଅଳଙ୍କାର" ଓ 'ପ୍ରସନ୍ନରାଘବ"ର ପ୍ରଣେତା ଜୟଦେବ ପ୍ରଧାନ । ଏହି ଉଭୟଙ୍କ ନାମ ଯଥାକ୍ରମ କୃଷ୍ଣଦାସ ଓ ଚନ୍ଦ୍ରଶେଖର ମିଶ୍ର । କିନ୍ତୁ ଏମାନେ ଗୀତଗୋବିନ୍ଦ ଲେଖକଙ୍କ ପରି ଖ୍ୟାତି ଅର୍ଜନ କରି ପାରି ନାହାନ୍ତି । ଏହି ପ୍ରସିଦ୍ଧ କବିଙ୍କର ବାସସ୍ଥାନ ନେଇ ବହୁକାଳରୁ ପଣ୍ଡିତମାନଙ୍କ ମଧ୍ୟରେ ବିବାଦ ଲାଗି ରହିଅଛି । ଜୟଦେବଙ୍କୁ ବହୁ ଐତିହାସିକ ପଣ୍ଡିତ ବଙ୍ଗାଳି ବୋଲି ପ୍ରମାଣ କରି ପୁସ୍ତକ ରଚନା କରିଥିଲାବେଳେ ବହୁ ଓଡ଼ିଆ ଅନ୍ୱେଷକ ମଧ୍ୟ ତାହାଙ୍କୁ ଉତ୍କଳୀୟ ବୋଲି ପ୍ରମାଣ କରିଅଛନ୍ତି ।

### ଜୟଦେବ ବଙ୍ଗାଳୀ !!

ବହୁକାଳରୁ ବଙ୍ଗୀୟ ଲେଖକଗଣ ଜୟଦେବଙ୍କୁ ବଙ୍ଗାଳୀ ଭାବରେ ପ୍ରମାଣ କରି ଆସୁଅଛନ୍ତି । ସ୍ୱର୍ଗୀୟ ରମେଶଚନ୍ଦ୍ର ଦତ୍ତ

ମହାଶୟ 'ବଙ୍ଗ ସାହିତ୍ୟ' ନାମକ ପୁସ୍ତକରେ ଜୟଦେବଙ୍କୁ ବଙ୍ଗାଳି ବୋଲି ଦର୍ଶାଇଛନ୍ତି । ତାଙ୍କ ମତରେ ସେ ବଙ୍ଗରାଜା ଲକ୍ଷ୍ମଣ ସେନଙ୍କ ରାଜସଭାରେ ବର୍ତ୍ତିଥିଲେ ଏବଂ ସେ ହେଉଛନ୍ତି ଦ୍ୱାଦଶ ଶତାବ୍ଦୀର ଲୋକ । କେନ୍ଦ୍ରବିଲ୍ୱ ବା କେନ୍ଦୁଲି ଗ୍ରାମରେ ସେ ଜନ୍ମଗ୍ରହଣ କରିଥିଲେ । ବୀରଭୂମି ଜିଲ୍ଲାର କେନ୍ଦୁଲି ଗ୍ରାମରେ ଜୟଦେବଙ୍କର ସମାଧି ଅଛି । ଏଠାରେ ପ୍ରତିବର୍ଷ ମେଳା ହୋଇଥାଏ । *

ବଙ୍ଗଳା 'ଶବ୍ଦକଳ୍ପ' ପ୍ରଣେତା ଏବଂ ବହୁ ଲେଖକ ରମେଶଙ୍କ ମତକୁ ସମର୍ଥନ କରି ଜୟଦେବଙ୍କୁ ବଙ୍ଗାଳୀ ବୋଲି ଅନୁମାନ କରନ୍ତି । ସେମାନଙ୍କ ମଧ୍ୟରେ ଶ୍ରୀଯୁକ୍ତ ହରେକୃଷ୍ଣ ମୁଖୋପାଧ୍ୟାୟଙ୍କ ମତ ପ୍ରଣିଧାନଯୋଗ୍ୟ । କାରଣ ବଙ୍ଗସାହିତ୍ୟରେ ଜୟଦେବଙ୍କ ସଂପର୍କରେ ପ୍ରାମାଣିକ ଗ୍ରନ୍ଥ ରଚନା କରିଅଛନ୍ତି ବୋଲି ସେ ପ୍ରସିଦ୍ଧ ହୋଇଛନ୍ତି । ତେଣୁ ଜୟଦେବଙ୍କ ସମ୍ପର୍କରେ ଆଲୋଚନା ହେଲାବେଳେ ସାଧାରଣତଃ ତାଙ୍କର ମତାମତ ପ୍ରତି ବଙ୍ଗୀୟ ଆଲୋଚକଗଣ ଦୃଷ୍ଟି ଆକର୍ଷଣ କରିଥାଆନ୍ତି । ତାଙ୍କର ପ୍ରସିଦ୍ଧ ପୁସ୍ତକ "କବି ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ" ପୁସ୍ତକର ଦୀର୍ଘ ଭୂମିକାରେ ସେ ଜୟଦେବଙ୍କୁ ବଙ୍ଗୀୟ ବୋଲି ପ୍ରମାଣ କରିବାକୁ ଚେଷ୍ଟା କରିଛନ୍ତି ।

## ରମେଶଚନ୍ଦ୍ରଙ୍କ ସିଦ୍ଧାନ୍ତ ଅମୂଳକ

କାରଣ କବିଙ୍କ ସମୟ ନେଇ ରମେଶଚନ୍ଦ୍ର ଯେଉଁ ସିଦ୍ଧାନ୍ତରେ ପହଞ୍ଚିଛନ୍ତି ତାହା ଆଦୌ ଠିକ୍ ନୁହେଁ । ଏ ସମ୍ପର୍କରେ

* ପ୍ରାଚୀନ ଉତ୍କଳ—ଜଗବନ୍ଧୁ ସିଂହ —ପୃ ୮୮

'ପ୍ରାଚୀନ ଉତ୍କଳ'ର ଲେଖକ ବିଶଦ ଆଲୋଚନା କରିଛନ୍ତି । 'ଗୀତଗୋବିନ୍ଦ' ପାଠ ଜଗନ୍ନାଥଙ୍କ ନୀତି ମଧ୍ୟରେ ଗୋଟିଏ ପ୍ରଧାନ ନୀତି । ଶ୍ରୀମନ୍ଦିରରେ ବଡ଼ସିଂହାର ଉତ୍ତାରୁ ପ୍ରତ୍ୟହ ଗୀତଗୋବିନ୍ଦ ପାଠ କରାଯାଏ । ମାଦଳା ପାଞ୍ଜି ମତରେ ରାଜକବି ନରସିଂହ ଦେବ ଗୀତ ଗୋବିନ୍ଦ ପାଠ ପ୍ରଥମେ ଖଞ୍ଜା କରାଇଥିଲେ । କବି ନରସିଂହ ୧୨୮୨-୧୩୦୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ। ସୁତରାଂ ୧୨୮୨ ଖ୍ରୀଷ୍ଟାବ୍ଦର ବହୁ ପୂର୍ବରୁ ଗୀତଗୋବିନ୍ଦ ନିଶ୍ଚୟ ରଚିତ ହୋଇଥିଲା । ପୁନଶ୍ଚ "ରାମାନନ୍ଦ" ଗ୍ରନ୍ଥର ଲେଖକ ଉଲ୍ଲେଖ କରିଛନ୍ତି ଯେ ଏକାବର୍ତ୍ତୀ ଭୀମଦେବ ଗୀତଗୋବିନ୍ଦ ନ ଶୁଣି ଜଳଗ୍ରହଣ କରୁ ନ ଥିଲେ । ଭୀମଦେବ ରାଜା ଚୋଡ଼ଗଙ୍ଗେଶ୍ୱରଙ୍କ ପୁତ୍ର । ହଣ୍ଟର ସାହେବ ତାଙ୍କ ରାଜତ୍ୱକାଳ ୧୧୬୭—୧୧୭୧ ଖ୍ରୀଷ୍ଟାବ୍ଦ ଠିକ୍ କରିଅଛନ୍ତି । ଅତଏବ ୧୧୬୭ ସାଲ ପୂର୍ବରୁ ଗୀତଗୋବିନ୍ଦ ରଚିତ ହୋଇଥିଲା । ଗୀତଗୋବିନ୍ଦ ଅନୁକରଣରେ ଅଭିନବ ଗୀତଗୋବିନ୍ଦ" ରଚିତ ହୋଇଥିଲା ବୋଲି ସମସ୍ତେ ଜାଣନ୍ତି । କବି ପୁରୁଷୋତ୍ତମ ତାହାର ରଚୟିତା ଥିଲେ । ପୁରୁଷୋତ୍ତମ ଦେବ ଦୁଇଜଣ ଥିଲେ । କପିଳେନ୍ଦ୍ରଙ୍କ ପୁତ୍ର ପୁରୁଷୋତ୍ତମ ଏବଂ ଅନଙ୍ଗଦେବଙ୍କ ପୁତ୍ର ପୁରୁଷୋତ୍ତମ । ଅନଙ୍ଗଙ୍କ ପୁତ୍ର ୧୨୦୯-୧୨୩୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ତେଣୁ ଏହି ସମୟରେ ଅଭିନବ ଗୀତଗୋବିନ୍ଦ ରଚିତ ହୋଇଥିବା ଆଶା କରାଯାଏ ।

ପୁନଶ୍ଚ ବିଶ୍ୱକୋଷରୁ ଜଣାଯାଏ ଯେ ମାଣିକଚନ୍ଦ୍ର ରାଜାଙ୍କ ସମୟରେ 'ଅଳଙ୍କାର ଶେଖର' ନାମକ ପୁସ୍ତକ ରଚିତ ହୋଇଥିଲା ଏ ଗ୍ରନ୍ଥରେ ଜୟଦେବ ଉତ୍କଳ ରାଜାଙ୍କ ସଭାକବି ଥିବାର ଉଲ୍ଲେଖ

ଅଛୁ । ମାଣିକ ଚନ୍ଦ୍ର ଉତ୍ତର ବଙ୍ଗରେ ଜଣେ ପ୍ରଧାନ ରାଜା ଥିଲେ । "ବଙ୍ଗସାହିତ୍ୟ" ଲେଖକ ଦତ୍ତ ମହାଶୟ ମାଣିକଚନ୍ଦ୍ର, (୫୭-୫୮ ପୃ) ଏକାଦଶ ଶତାବ୍ଦୀର ଲୋକ ଥିଲେ ବୋଲି ଲେଖିଛନ୍ତି । ଏଣୁକରି ଜୟଦେବ ଏକାଦଶ ଶତାବ୍ଦୀର ବୋଲି ଅନୁମାନ କରିବାର କଥା । ତେଣୁ ରମେଶଚନ୍ଦ୍ର ଦତ୍ତ ଜୟଦେବଙ୍କୁ ଲକ୍ଷ୍ମଣ-ସେନଙ୍କ ସଭାକବି କହିବାରେ ଆଦୌ ସତ୍ୟତା ଥାଇ ନ ପାରେ । କାରଣ ଲକ୍ଷ୍ମଣସେନ ଦ୍ୱାଦଶ ଶତାବ୍ଦୀର ଲୋକ ଥିଲେ ବୋଲି ରାଜେନ୍ଦ୍ରଲାଲ ମିତ୍ର ଓ ଆଇନ ଆକବରୀ ଗଣନାରୁ ଜଣାଯାଏ ।

## ଜୟଦେବ ଲକ୍ଷ୍ମଣସେନଙ୍କ ସଭାକବି ହୋଇ ନ ପାରନ୍ତି—

ବଙ୍ଗୀୟ ଐତିହାସିକଗଣ ଜୟଦେବଙ୍କୁ ଲକ୍ଷ୍ମଣସେନଙ୍କ ସଭାକବି ଥିଲେ ବୋଲି ପ୍ରମାଣ କରିବାକୁ ଚେଷ୍ଟା କରି ଆସୁଅଛନ୍ତି । ଏପରିକି ଶ୍ରୀଯୁକ୍ତ ହରେକୃଷ୍ଣ ମୁଖୋପାଧ୍ୟାୟ ମଧ୍ୟ ତାଙ୍କର ସମ୍ପାଦିତ ଗୀତଗୋବିନ୍ଦ ପୁସ୍ତକର ଭୂମିକାରେ ଏହି ମର୍ମରେ ଯୁକ୍ତି ପ୍ରଖ୍ୟାପନ କରିଅଛନ୍ତି । ସେଥିରୁ ଜଣାଯାଏ ଯେ ଐତିହାସିକ-ମାନଙ୍କ ମତରେ ଲକ୍ଷ୍ମଣସେନ ଖ୍ରୀଷ୍ଟୀୟ ୧୧୧୯ ଅବ୍ଦରେ ସିଂହାସନ ଆରୋହଣ କରିଥିଲେ । ସୁତରାଂ କବି ଜୟଦେବ ଦ୍ୱାଦଶ ଶତକର ମଧ୍ୟଭାଗରେ ଆବିର୍ଭୂତ ହୋଇଥିଲେ ବୋଲି କୁହାଯାଇପାରେ । ପୁନଶ୍ଚ ଗୀତଗୋବିନ୍ଦରେ ରାଜା ଲକ୍ଷ୍ମଣସେନଙ୍କ ନାମ ଉଲ୍ଲେଖ ନ ଥିବାରୁ ସେ ତାଙ୍କର ସଭାକବି ଥିଲେ ବୋଲି ଯେଉଁମାନେ ସନ୍ଦେହ ପ୍ରକାଶ କରନ୍ତି, ସେମାନଙ୍କୁ ଉତ୍ତର ଦେଇ ଶ୍ରୀଯୁକ୍ତ ମୁଖୋପାଧ୍ୟାୟ କହିଛନ୍ତି ଯେ Buehler ସାହେବଙ୍କ କାଶ୍ମୀରରୁ ପ୍ରାପ୍ତ ପୋଥିରେ ସେନଙ୍କ ନାମ ମିଳେ । ତାକୁ ପ୍ରକ୍ଷିପ୍ତ ବୋଲି ଧରିବା ଏ ତେବେ ଜୟଦେବଙ୍କ ରଚିତ—

ଲକ୍ଷ୍ମୀ କେଳ ଭୁଜଙ୍ଗହତେ ସଂକଳ୍ପ କଳ୍ପଦ୍ରୁମ
ଶ୍ରେୟଃ ସାଧକ ସଙ୍ଗସଙ୍ଗରକଳାଙ୍ଗେୟ ରଙ୍ଗପ୍ରିୟ
ଗୌଡେନ୍ଦ୍ର ପ୍ରତିରାଜରାଜକ ସଭାଳଙ୍କାର କାରିର୍ପିତ
ପ୍ରତ୍ୟର୍ଥିକ୍ଷିତିପାଳପାଳକ ସତାଂ ଦୃଷ୍ଟୋଽପି ତୁଷ୍ଟାବୟଂ ।

ଉପରୋକ୍ତ ଶ୍ଳୋକରେ 'ଗୌଡେନ୍ଦ୍ର' ପ୍ରତି ଦୃଷ୍ଟିପାତ କଲେ ସନ୍ଦେହ ଭଞ୍ଜନ ହେବ । ଜୟଦେବଙ୍କ ସମୟରେ କିଏ ଗୌଡେନ୍ଦ୍ର ଥିଲେ ? ସବୁ ଦିଗରୁ ସାମଞ୍ଜସ୍ୟ ରଖି ଏହି ପ୍ରଶ୍ନର ଉତ୍ତର ଦେଲେ ଗୌଡେନ୍ଦ୍ର ଲକ୍ଷ୍ମଣସେନଙ୍କ ଛଡ଼ା ଆଉ କେହି ହେବେ ନାହିଁ । *

ଉପରୋକ୍ତ ଆଲୋଚନାରେ ଲେଖକ କୌଣସି ଐତିହାସିକ ପ୍ରମାଣ ଦେଇ ପାରି ନାହାନ୍ତି । Buehler ଙ୍କ ଗ୍ରନ୍ଥ ଯେ ପ୍ରକ୍ଷିପ୍ତ ତାହା ଲେଖକ ପ୍ରକାରାନ୍ତରେ ସ୍ୱୀକାର କରିଛନ୍ତି । 'ଗୌଡେନ୍ଦ୍ର' ଙ୍କୁ ଲକ୍ଷ୍ମଣସେନ ବୋଲି କହିବାର ମଧ୍ୟ କୌଣସି କାରଣ ନାହିଁ ବୋଲି ସ୍ପଷ୍ଟ ଜଣା ପଡୁଛି । ଏହି ସଂପର୍କରେ 'ପ୍ରାଚୀନ ଉତ୍କଳ' ଲେଖକଙ୍କର ଆଲୋଚନା ମଧ୍ୟ ପ୍ରଣିଧାନଯୋଗ୍ୟ । ଲକ୍ଷ୍ମଣ ସେନଙ୍କ ସମୟରେ ବଙ୍ଗଳାରେ ଶାକ୍ତଧର୍ମର ବିଶେଷ ପ୍ରଭାବ ଥିଲା । ସେ ୯୧୭୦ ଖ୍ରୀଷ୍ଟାବ୍ଦରେ ରାଜା ହେଲେ ଏବଂ ୧୧୯୦ରେ ବକ୍ତିଅର ଖିଲଜିଙ୍କ ଦ୍ୱାରା ପରାଜିତ ହୋଇ ପଳାୟନ କଲେ ଏବଂ ଓଡ଼ିଶା ରାଜାଙ୍କ ଆଶ୍ରୟ ଗ୍ରହଣ କଲେ । କେଶବସେନ ନାମମାତ୍ର ରାଜା ଥିଲେ । ବଲ୍ଲାଳସେନଙ୍କ ସମୟରୁ ଲକ୍ଷଣସେନଙ୍କ ସମୟ ପର୍ଯ୍ୟନ୍ତ ସମଗ୍ର ଗୌଡ଼ ପ୍ରଦେଶରେ ତାନ୍ତ୍ରିକ ଧର୍ମର

* (୨) କବି ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ
ଶ୍ରୀ ହରେକୃଷ୍ଣ ମୁଖୋପାଧ୍ୟାୟ ଭୂମିକା—ପୃ୧୦-୧୧

ପୂର୍ଣ୍ଣ ପ୍ରଭାବ ଥିଲା । ପଞ୍ଚମକାର ସେବା ଓ ବିଳାସିତା ଆତ୍ୟ-ନୈମିତ୍ତିକ କ୍ରିୟାକଳାପ ଥିଲା । ଗୌଡ଼ୀୟ ସେନାମାନଙ୍କ ମଧ୍ୟରେ ଏହି ବିଳାସିତା ପ୍ରବେଶ କରିବାରୁ ସେମାନେ ଉଚ୍ଛୃଙ୍ଖଳ ଓ ବିଶୃଙ୍ଖଳ ହେଲେ ଏବଂ ଫଳରେ ସେମାନେ ମୁସଲମାନ ମାନଙ୍କ ଦ୍ୱାରା ପରାସ୍ତ ହେଲେ । ଲକ୍ଷ୍ମଣସେନଙ୍କ ରାଜସଭାର ଏହି ଅବସ୍ଥାବେଳେ ପରମ ବୈଷ୍ଣବ ଜୟଦେବ ସେ ସଭାର କବି ଥିବା ସମ୍ଭବ ନୁହେଁ । ‡

ଜୟଦେବଙ୍କୁ ବଙ୍ଗାଳୀ ବୋଲି ପ୍ରମାଣ କରିବାକୁ ବହୁ ଅଦ୍ଭୁତ ଯୁକ୍ତି ପ୍ରଦର୍ଶନ କରା ଯାଇଥାଏ । ଜୟଦେବଙ୍କ ଜନ୍ମସ୍ଥାନ ବଙ୍ଗଳାର ବୀରଭୂମି ଜିଲ୍ଲାର କେନ୍ଦୁବିଲ୍ୱ ବା କେନ୍ଦୁଲୀ ଗ୍ରାମ ବୋଲି ସେମାନେ କହି ଥାଆନ୍ତି । ଏହି ଗ୍ରାମରେ "ଜୟଦେବ ଦେଉଳ" ଅଛି ଏବଂ ସେହିଠାରେ ପ୍ରତିବର୍ଷ ଜୟଦେବଙ୍କ ସ୍ମୃତିରେ ପ୍ରତି ପୌଷ ସଂକ୍ରାନ୍ତିରେ ମେଳା ହୋଇଥାଏ ବୋଲି ଶ୍ରୀଯୁକ୍ତ ହରେକୃଷ୍ଣ ମୁଖୋପାଧ୍ୟାୟ ଓ ଅନ୍ୟାନ୍ୟ ଐତିହାସିକଗଣ ଯୁକ୍ତି ସ୍ୱରୂପ କହିଥାଆନ୍ତି । କିନ୍ତୁ ଆଲୋଚନାରୁ ଜଣାଯାଏ ଯେ ସମଗ୍ର ଗୀତଗୋବିନ୍ଦରେ ଜୟଦେବ ନିଜର ବାସସ୍ଥାନ ସଂପର୍କରେ କିଛି ଉଲ୍ଲେଖ କରି ନାହାନ୍ତି । କେବଳ ତାଙ୍କର ଜୀବନୀ ଲେଖକମାନଙ୍କ ଲେଖାରୁ ଏବଂ ଜନଶ୍ରୁତିରୁ କେନ୍ଦୁବିଲ୍ୱ ତାଙ୍କର ଜନ୍ମସ୍ଥାନ ଥିଲାବୋଲି ଜଣାଯାଇଛି । ପୁରୀଜିଲ୍ଲାରେ ମଧ୍ୟ କେନ୍ଦୁଲୀ ଗ୍ରାମ ଅଛି । ତେଣୁ ତାଙ୍କର ଜନ୍ମସ୍ଥାନ ପୁରୀଜିଲ୍ଲାର କେନ୍ଦୁଲୀ ନ ହୋଇ ବୀରଭୂମିର କେନ୍ଦୁଲୀ ଯେ କାହିଁକି ହେବ ତାହାର କୌଣସି ଯୁକ୍ତି ନାହିଁ । ବରଂ ଜୟଦେବଙ୍କୁ

---

‡ ପ୍ରାଚୀନ ଉତ୍କଳ—ଜଗବନ୍ଧୁ ସିଂହ—ପୃ ୫୧

ବଙ୍ଗାଳୀ କରିବା ପାଇଁ ଉପର ଗତ କେତେବର୍ଷ ହେଲା ଉଦ୍ୟମ ହୋଇ ଅଛି, ତାହାର ପ୍ରମାଣ ମିଳୁଛି । ବୀରଭୂମି ଜିଲାର "ଜୟଦେବ ଦେଉଳ" ୧୬୦୫ ଖ୍ରୀଷ୍ଟାବ୍ଦରେ ବର୍ଦ୍ଧମାନ ରାଜା କୀର୍ତ୍ତିଚନ୍ଦ୍ରଙ୍କ ମାତା ତୋଳାଇଥିଲେ ବୋଲି ବୀରଭୂମି ଜିଲା ଗେଜେଟିଅରରୁ ଜଣାଯାଏ । ଏ ଦେଉଳରେ ରାଧାବିନୋଦ ମୂର୍ତ୍ତି ପୂଜିତ ହେଉଥିଲେହେଁ ତାହା ଯେ ଜୟଦେବଙ୍କ ପୂଜିତ ମୂର୍ତ୍ତି ନୁହନ୍ତି ଏବଂ ଜୟଦେବଙ୍କ ମୃତ୍ୟୁ ପରେ ଜୟପୁର ମହାରାଜା ବୃନ୍ଦାବନକେଶୀ ଘାଟଠାରୁ ଯେ ସେ ମୂର୍ତ୍ତି ନେଇ ଯାଇଛନ୍ତି, ତାହାର ପ୍ରମାଣ ମିଳୁଛି । ଏହି ସଂପର୍କରେ ଐତିହାସିକ ଲକ୍ଷ୍ମୀନାରାୟଣ ହରିଚନ୍ଦନ ଜଗଦେବ "ଜୟଦେବ" ଶୀର୍ଷକ ଆଲୋଚନା କରି "ଆସନ୍ତା କାଲି" ପତ୍ରିକାରେ ଲେଖିଛନ୍ତି ଯେ ଜୟଦେବ ଅପ୍ରକଟ ହେବାର ଅନେକ ଦିନ ପରେ ଆଉରଙ୍ଗ-ଜେବ ବାଦ୍‌ଶାଙ୍କ ସମୟରେ ଯେତେବେଳେ ବୃନ୍ଦାବନର ମନ୍ଦିରମାନଙ୍କୁ ତୋପ ମାରି ଭଗ୍ନ କରାଗଲା, ତାହା ପୂର୍ବରୁ ସଂବାଦପାଇ ବୈଷ୍ଣବମାନେ ବୃନ୍ଦାବନର ପ୍ରଧାନ ବିଗ୍ରହ ଗୋବିନ୍ଦ, ଗୋପୀନାଥ ଓ ମଦନମୋହନଙ୍କ ସହିତ ଜୟଦେବଙ୍କ ମନ୍ଦିରର ରାଧାମାଧବଙ୍କୁ ନେଇ ଜୟପୁର ରାଜାଙ୍କୁ ପ୍ରଦାନ କରିଥିଲେ । ସେ ଉକ୍ତ ବିଗ୍ରହମାନଙ୍କୁ ଘାଟୀନାମକ ସ୍ଥାନରେ ସ୍ଥାପନ କଲେ । ଅଦ୍ୟାବଧି ସେ ବିଗ୍ରହ ସବୁ ସେଠାରେ ପୂଜିତ ହେଉଅଛନ୍ତି । ଶାନ୍ତି ପ୍ରତିଷ୍ଠିତ ହେବା ଉତ୍ତାରେ ବୃନ୍ଦାବନ-ନବ ନିର୍ମିତ ମନ୍ଦିରମାନଙ୍କରେ ନୂତନ ମୂର୍ତ୍ତି ସ୍ଥାପିତ ହୋଇ ପୂଜା ପାଉଅଛନ୍ତି ।

## ଜୟଦେବଙ୍କ ଜନ୍ମସ୍ଥାନ ଉତ୍କଳ !!!

ଶ୍ରୀଯୁକ୍ତ ହରିଚନ୍ଦନ ଜୟଦେବଙ୍କୁ ଉତ୍କଳୀୟ ବୋଲି ପ୍ରମାଣ କରି ଆହୁରି କେତେକ ଯୁକ୍ତି ଦର୍ଶାଇ ଅଛନ୍ତି । ତାଙ୍କ ମତରେ ଜୟଦେବ ତାହାଙ୍କର ପୂର୍ବବର୍ତ୍ତୀ ସଂସ୍କୃତ କବିତାର ଅନୁକରଣ ନ କରି ନିଜର ଅଭିମତ ଅନୁସାରେ ଉତ୍କଳରେ ବ୍ୟବହୃତ ମାଳବ, ଗୁର୍ଜରି, କର୍ଣ୍ଣାଟ ରାଗିଣୀମାନଙ୍କରେ ସଂସ୍କୃତ ପଦ୍ୟମାନ ରଚନା କରିଥିଲେ । ଓଡ଼ିଆ କବିତାର ଅନୁକରଣରେ ଜୟଦେବ ମିତାକ୍ଷରରେ ଅନେକ ଶ୍ଳୋକ ରଚନା କରିଅଛନ୍ତି । ମିତାକ୍ଷରରେ କବିତା ରଚନା ବଙ୍ଗ ଭାଷାରେ କିମ୍ବା ଅନ୍ୟ କୌଣସି ଭାଷାରେ ବହୁଳ ଭାବରେ ଦେଖାଯାଏ ନାହିଁ ।

ଦ୍ୱିତୀୟରେ ଜୟଦେବଙ୍କ ସହିତ ଉତ୍କଳର ସଂପର୍କ ଯେ ଅତି ଘନିଷ୍ଠ ଥିଲି ସେ କଥା ସମସ୍ତେ ସ୍ୱୀକାର କରିଅଛନ୍ତି । ଶ୍ରୀଯୁକ୍ତ ହରେକୃଷ୍ଣ ମୁଖୋପାଧ୍ୟାୟ ମଧ୍ୟ ତାଙ୍କ ଭୂମିକାର ୧୯–୨୦ ପୃଷ୍ଠାରେ ଏ ସଂପର୍କରେ ବିଶଦ ଆଲୋଚନା କରି କହିଛନ୍ତି ଯେ ସେତେବେଳେ ଉତ୍କଳରେ ବୈଷ୍ଣବ ଧର୍ମର ନୂତନ ଆନ୍ଦୋଳନ ଆରମ୍ଭ ହୋଇଥିଲି । କଳା, ସାହିତ୍ୟ, ସ୍ଥାପତ୍ୟ, ଶୌର୍ଯ୍ୟବୀର୍ଯ୍ୟ, ଭାସ୍କର୍ଯ୍ୟ ପ୍ରଭୃତି ପ୍ରତ୍ୟେକ ଦିଗରେ ଓଡ଼ିଶା ସେତେବେଳେ ସାରା ଭାରତର ଦୃଷ୍ଟି ଆକର୍ଷଣ କରିଥିଲି । ସମ୍ରାଟ ବଲ୍ଲାଲସେନ ଓ ଲକ୍ଷ୍ମଣସେନଙ୍କ ସହିତ ଓଡ଼ିଶାର ସମ୍ବନ୍ଧ ସଂପର୍କରେ ମଧ୍ୟ ମୁଖୋପାଧ୍ୟାୟ ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରି ବଙ୍ଗୀୟ ଜୟଦେବଙ୍କ ଓଡ଼ିଶା ସଂପର୍କର ଅବତାରଣା କରିଛନ୍ତି । ଜୟଦେବ ଯେ ସେନ ରାଜାବଂଶଙ୍କ ସମକାଳୀନ ନୁହନ୍ତି, ତାହା ପୂର୍ବରୁ ଆଲୋଚିତ ହୋଇଛି । ପୁନଶ୍ଚ ଜୟଦେବଙ୍କ

ଉଳ ଵଵ ବଙ୍ଗଳାର ସେତେବେଳର ଆଧ୍ୟାତ୍ମିକ ବାତାବରଣ-ରେ ଜନ୍ମ ହୋଇ ପ୍ରସିଦ୍ଧି ଲାଭ କରିବା ମଧ୍ୟ ସମ୍ଭବ ନୁହେଁ । ବରଂ ଉତ୍କଳରେ ଏକ ପ୍ରକାର ସାଂସ୍କୃତିକ ଅଭ୍ୟୁତ୍ଥାନ ସମ୍ଭବ ହୋଇଥିଲା ଏବଂ ଦାକ୍ଷିଣାତ୍ୟରୁ ବୈଷ୍ଣବ ଧର୍ମର ଧାରା ଉତ୍କଳ ଭୂମିକୁ ପ୍ଲାବିତ କରୁଥିଲା । ତେଣୁ ଜୟଦେବ ସେହି ଶୁଭକ୍ଷଣରେ ଏ ପ୍ରଦେଶରେ ଜନ୍ମଗ୍ରହଣ କରିବା ସମ୍ଭବ ।

ତୃତୀୟତଃରେ ଜୟଦେବଙ୍କ ସ୍ତ୍ରୀ ପଦ୍ମାବତୀ ଜଣେ ଦାକ୍ଷିଣାତ୍ୟ ବ୍ରାହ୍ମଣଙ୍କ କନ୍ୟା । ଜୟଦେବ ଓଡ଼ିଆ ହୋଇ ନ ଥିଲେ ପଦ୍ମାବତୀଙ୍କ ସହିତ ତାଙ୍କର ବିବାହ ସମ୍ଭବ ହୁଅନ୍ତା ନାହିଁ । କାରଣ ଓଡ଼ିଆ ବ୍ରାହ୍ମଣଙ୍କ ସହିତ ଦକ୍ଷିଣୀ ବ୍ରାହ୍ମଣଙ୍କ ଅଦ୍ୟାବଧି ବୈବାହିକ ସମ୍ବନ୍ଧ ଚଳୁଅଛି । ମାତ୍ର ବଙ୍ଗୀୟ ବ୍ରାହ୍ମଣମାନଙ୍କ ସହିତ ସେପରି ସଂପର୍କ ଦୃଷ୍ଟିଗୋଚର ହୁଏନାହିଁ ।

ଚତୁର୍ଥରେ ଜୟଦେବ ପ୍ରତିଦିନ ଗଙ୍ଗାସ୍ନାନ କରୁଥିଲେ ବୋଲି ଭକ୍ତମାଳ ଗ୍ରନ୍ଥରୁ ଜଣାଯାଏ । ଜୟଦେବଙ୍କ ଜନ୍ମସ୍ଥାନ ବଙ୍ଗଳା ବୀରଭୂମି ଜିଲାର କେନ୍ଦୁଲୀ ହେଲେ ଏହା ଆଦୌ ସମ୍ଭବ ନୁହେଁ । ମାତ୍ର ପୁରୀ ଜିଲାର ପ୍ରାଚୀ କୂଳରେ କେନ୍ଦୁଲୀ ଗ୍ରାମରେ ତାଙ୍କର ବାସସ୍ଥାନ ନ ହୋଇଥିଲେ 'ଭକ୍ତମାଳା' ଲେଖକ ଏ କଥା ଲେଖି ନ ଥାନ୍ତେ । କାରଣ ମାଘମାସର ତ୍ରିବେଣୀ ଅମାବାସ୍ୟା ଦିନ ପ୍ରାଚୀ କୂଳରେ ବଡ ମେଳା ହୁଏ ଏବଂ ବୁଡ ପଡ଼େ । ପଦ୍ମପୁରାଣ ଅନ୍ତର୍ଗତ ପ୍ରାଚୀ ମାହାତ୍ମ୍ୟରେ ପ୍ରାଚୀର ମାହାତ୍ମ୍ୟ ବର୍ଣ୍ଣିତ ହୋଇଅଛି । ସେଥିରେ ବର୍ଷକେ ଥରେ ଗଙ୍ଗାଙ୍କର ଆବିର୍ଭାବ ହୁଏ ଏବଂ ପ୍ରାଚୀସ୍ନାନ ଅପେକ୍ଷା ଅନେକ ଫଳପ୍ରଦ ବୋଲି ମଧ୍ୟ କୁହାଯାଇଛି । *

---

* ପ୍ରାଚୀନ ଉତ୍କଳ—ପୃ ୫୭-୫୮

## ଜୟଦେବଙ୍କ ଜନ୍ମସ୍ଥାନ ବଙ୍ଗଳା !!!

ଶ୍ରୀଯୁକ୍ତ ହରେକୃଷ୍ଣ ମୁଖୋପାଧ୍ୟାୟ ଜୟଦେବଙ୍କ ଜନ୍ମସ୍ଥାନ ବଙ୍ଗଳା ବୋଲି ଯେଉଁ କେତେକ ବଳିଷ୍ଠ ଯୁକ୍ତିର ଅବତାରଣା ତାଙ୍କର ଭୂମିକାରେ କରିଅଛନ୍ତି, ତାହାର ଆଲୋଚନା ଏଠାରେ କରିବା ସଙ୍ଗତ ହେବ । +

"କଥିତ ଅଛେ କବିରାଜ ଗୋସ୍ୱାମୀ ଜୟଦେବ, ବଙ୍ଗେଶ୍ୱର ଲକ୍ଷ୍ମଣସେନେର ସଭାସଦ—ସମ୍ରାଟେର ପାଞ୍ଚିରତ୍ନେର ଅନ୍ୟତମ ରତ୍ନ ଛିଲେନ । ଅନେକେ ବଲେନ ଶ୍ରୀପାଦ ସନାତନ ଗୋସ୍ୱାମୀ ନାକି ନବଦ୍ୱୀପେର ନୃପସଭାଦ୍ୱାରେ ନିମ୍ନୋକ୍ତ ଶ୍ଳୋକଟି ଖୋଦିତ ଦେଖିଆ ଛିଲେନ"—

"ଗୋବର୍ଦ୍ଧନଶ୍ଚ ଶରଣୋ ଜୟଦେବ ଉମାପତିଃ
କବିରାଜଶ୍ଚ ରତ୍ନାନି ପଞ୍ଚୈତେ ଲକ୍ଷ୍ମଣସ୍ୟ ଚ ।

ଏଇ ଶ୍ଳୋକଟି କବିଧୋୟୀ କବିରାଜ ଆଖ୍ୟାୟ ଅଭିହିତ ହଇୟାଛେନ । ସମ୍ରାଟ ସଭାର ଅପର ଚାରିଟି ରତ୍ନ ଉମାପତିଧର, ଗୋବର୍ଦ୍ଧନ, ଶରଣ ଏବଂ ଧୋୟୀ ।"

ପୁନଶ୍ଚ ବଙ୍ଗୀୟ ଐତିହାସିକଗଣ ଗୀତଗୋବିନ୍ଦର ନିମ୍ନୋକ୍ତ ଶ୍ଳୋକ—

"ବାଚଃ ପଲ୍ଲବୟତ୍ୟୁମାପତିଧରଃ ସନ୍ଦର୍ଭ ଶୁଦ୍ଧିଂ ଗିରାଂ
ଜାନୀତେ ଜୟଦେବ ଏବ ଶରଣଃ ଶ୍ଳାଘ୍ୟୋ ଦୁରୂହ ଦ୍ରୁତେ
ଶୃଙ୍ଗାରୋତ୍ତର ସତ୍ପ୍ରମେୟ ରଚନୈ-ରାଚାର୍ଯ୍ୟ ଗୋବର୍ଦ୍ଧନଃ
କୋଽପି ନ ବିଶ୍ରୁତଃ ଶ୍ରୁତିଧରୋ ଧୋୟୀ କବିଃ କ୍ଷ୍ମାପତିଃ ।"
( ପ୍ରଥମ ସର୍ଗ )

---

+ କବି ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ ଭୂମିକା-ପୃ ୬-୭

ଉଦ୍ଧାର କରି ତାହାଙ୍କୁ ବଙ୍ଗାଳୀ ବୋଲି ପ୍ରମାଣ କରିବାକୁ ଚେଷ୍ଟା କରିଥାଆନ୍ତି ।

ସୁପ୍ରସିଦ୍ଧ ଐତିହାସିକ କେଦାର ନାଥ ମହାପାତ୍ର ଉପରୋକ୍ତ ଯୁକ୍ତିରସମୁଚିତ ଖଣ୍ଡନ କରିଛନ୍ତି । †

ଉପରୋକ୍ତ ଆଲୋଚନାର ପ୍ରଥମ ଯୁକ୍ତିଟି ବସ୍ତୁର କଳ୍ପନା । ଲକ୍ଷ୍ମଣସେନଙ୍କ ସଭାଗୃହ ଦ୍ୱାରରେ ଉପରୋକ୍ତ ଶ୍ଳୋକ ଲିଖିତ ହୋଇଥିବା ଓ ତାହାକୁ ସନାତନ ଗୋସ୍ୱାମୀ ଦେଖିଥିବା ଶୁଣାଯାଏ ପ୍ରମାଣ ନ ଥାଇ ଶୁଣା କଥାରେ କୌଣସି ଐତିହାସିକ ଗୁରୁତ୍ୱ ଆରୋପ କରିବା ଉଚିତନୁହେଁ । ପୁନଶ୍ଚ ଲକ୍ଷ୍ମଣସେନଙ୍କର ନବଦ୍ୱୀପରେ ରାଜଧାନୀ ଥିବାର କୌଣସି ପ୍ରମାଣ ପ୍ରାଚୀନ ଲେଖାରୁ ମିଳେନାହିଁ । ପରନ୍ତୁ ତାଙ୍କଦ୍ୱାରା ସମସ୍ତ ଦାନପତ୍ର "ବିକ୍ରମପୁର ସମାବାସିତଶ୍ରୀଜୟସ୍କନ୍ଧାବାରାତ" ବା ରାଜଧାନୀ ବିକ୍ରମପୁରରୁ ଦିଆ ହୋଇଥିବା ଜଣାଯାଏ । ଶ୍ରୀଚୈତନ୍ୟଙ୍କ ନବଦ୍ୱୀପରେ ଆବିର୍ଭାବ ଓ ତାଙ୍କ ଦ୍ୱାରା ଗୀତଗୋବିନ୍ଦର ପ୍ରଚାର ଫଳେ ଜୟଦେବ ପ୍ରଭୃତି ବାସ କରୁଥିବା କିମ୍ବଦନ୍ତୀ ସୃଷ୍ଟି ହୋଇଛି ।

ତାହା ଛଡ଼ା ଯୁକ୍ତି ସ୍ୱରୂପ ତାଙ୍କୁ ଲକ୍ଷ୍ମଣସେନଙ୍କ ସଭାପଣ୍ଡିତ ରୂପେ ଗ୍ରହଣ କଲେହେଁ ସେ ବଙ୍ଗୀୟ ବୋଲି କହିବାର କୌଣସି କାରଣ ନାହିଁ । କାରଣ ବିଦ୍ୱାନ ସର୍ବତ୍ର ପୂଜ୍ୟତେ । ଓଡ଼ିଶା ଗଜପତି ପ୍ରତାପରୁଦ୍ରଙ୍କ ସଭାରେ ପ୍ରସିଦ୍ଧ ବଙ୍ଗୀୟ ପଣ୍ଡିତ ବାସୁଦେବ ସାର୍ବଭୌମ ରହିଥିଲେ । ତାଙ୍କୁ କେହି ଉତ୍କଳୀୟ ବୋଲି ଦାବୀ

---

† ସମାଜ—୮।୧।୦୯

ଜଣିନାହାନ୍ତି । ଉତ୍କଳୀୟ କବି ଗୀତଦେବ 'କବି ଡିଣ୍ଡିମ' ବିଜୟ ନଗର ରାଜସଭାରେ ଆଦରପୂର୍ବକ କାଳକଟାଇଥିବା ଜଣାଯାଏ ।

ସେହ୍ୱପରି ଗୀତଗୋବିନ୍ଦରୁ ଉଦ୍ଧୃତ ଦ୍ୱିତୀୟ ଶ୍ଳୋକଟି ପ୍ରକ୍ଷିପ୍ତ ବୋଲି ଜଣାଯାଏ । ଯୁକ୍ତି ସ୍ୱରୂପ ଏହି ଶ୍ଳୋକଟିକୁ ମୌଳିକ ରଚନା ବୋଲି ଗ୍ରହଣ କଲେ ମଧ୍ୟ ଜୟଦେବ ବଙ୍ଗାଳୀ ବୋଲି ପ୍ରମାଣିତ ହେଉନାହାନ୍ତି । ଏଥିରେ କେବଳ ଉମାପତିଧର, ଶରଣ, ଗୋବର୍ଦ୍ଧନାଚାର୍ଯ୍ୟ ଓ ଧୋୟୀ ନାମକ ଚାରିଜଣ କବିଙ୍କଠାରୁ ନିଜର ଉତ୍କର୍ଷ ପ୍ରକାଶ କରିଅଛନ୍ତି । ସେମାନେ ତାଙ୍କର ସମକାଳୀନ ବା ପୂର୍ବବର୍ତ୍ତୀ ହୋଇ ପାରନ୍ତି । ଭାରତର ପ୍ରସିଦ୍ଧ କବିମାନେ ନିଜର ଗୌରବ ପ୍ରତିଷ୍ଠାପନ ପାଇଁ ଏଭଳି ତୁଳନାତ୍ମକ ବିଷୟରର ଆଶ୍ରୟ ଗ୍ରହଣ କରିଥିଆନ୍ତି ।

## ଜୟଦେବଙ୍କ ଉତ୍କଳୀୟତାର ଆଉ କେତେକ ପ୍ରମାଣ

ଗୀତଗୋବିନ୍ଦର ପ୍ରଥମ ସର୍ଗରେ ପ୍ରଦତ୍ତ 'ଦଶାବତାର ସ୍ତୁତି' ପ୍ରଣିଧାନଯୋଗ୍ୟ । କାରଣ ତାଙ୍କ ସମୟକୁ ବଙ୍ଗଳାରେ ଦଶାବତାର ପୂଜା ପ୍ରଚଳନ ଥିବାର କୌଣସି ପ୍ରମାଣ ନାହିଁ କିନ୍ତୁ ସେତେବେଳକୁ ଏହା ଉତ୍କଳରେ ସୁପ୍ରତିଷ୍ଠିତ । ଓଡ଼ିଶାରେ ସର୍ବତ୍ର ଦଶାବତାର ପୂଜା ରହିଛି । ଜାଜପୁରରେ ମତ୍ସ୍ୟାବତାର ସିଂହାଚଳରେ ନୃସିଂହାବତାର, କେନ୍ଦ୍ରାପଡ଼ାରେ ବଳଦେବ ଅବତାର, ଯାଜପୁରରେ ବରାହ, ପୁରୀରେ ବୁଦ୍ଧ, ଓଡ଼ଗାଁରେ ରଘୁନାଥ ଅବତାର ପୂଜା ତାହାର ପ୍ରମାଣ । ପୁନଶ୍ଚ ଓଡ଼ିଆ ପାଞ୍ଜିରେ ଡାଲିଆଁଳା ନବମୀ (ମତ୍ସ୍ୟପୂଜା) ନୃସିଂହ ଜନ୍ମ, ବଳଭଦ୍ର ପୂର୍ଣ୍ଣିମା (ଗହ୍ମା), ପରଶୁରାମାଷ୍ଟମୀ ଆଦିର ବିଶେଷତ୍ୱ ।

ବିଶେଷରେ ବଙ୍ଗଳାରେ ଗୀତଗୋବିନ୍ଦର ପ୍ରଚଳନ ପୂର୍ବରୁ ଓଡ଼ିଶାରେ ଏହାର ଟୀକା ଓ ଅନୁବାଦ ହୋଇ ବହୁଳ ପ୍ରଚାରିତ ହୋଇଛି । ବିଶ୍ୱନାଥ କବିରାଜଙ୍କ ପିତାମହ ନାରାୟଣ ଦାସ "ସର୍ବାଙ୍ଗ ସୁନ୍ଦରୀ" ନାମକ ଗୀତଗୋବିନ୍ଦ ଟୀକା ପ୍ରଣୟନ କରିଥିଲେ । ପଞ୍ଚଦଶ ଶତାବ୍ଦୀରେ ଲକ୍ଷ୍ମଣ ରସିକ ରଙ୍ଗଦା' ନାମରେ ଏକ ଟୀକା ରଚନା କରିଥିବା ଜଣାଯାଏ । ଧୃମୁଷରବେ କୌଣସି ଲେଖକ ଏକ ଟୀକା ରଚନା କରି କୃଷ୍ଣଭଞ୍ଜଙ୍କ ନାମରେ ଭଣିତ କରିଥିଲେ ବୋଲି ହଣ୍ଟର ସାହେବ ଉଲ୍ଲେଖ କରିଅଛନ୍ତି ।

ତୃତୀୟତଃ କବି ଉଦୟନାଚାର୍ଯ୍ୟ ଗୀତଗୋବିନ୍ଦର ଟୀକା ପ୍ରଣୟନ କରିଥିବା ଜଣାଯାଏ । (ପ୍ରାଚୀନ ଉତ୍କଳ ପୃ ୫୨) ସେ ଭୁବନେଶ୍ୱର ମନ୍ଦିରର ମେଘେଶ୍ୱର ଶିଳାଲିପି ରଚନା କରିଥିଲେ ଏବଂ ପ୍ରାଚୀ ନୀଳକଣ୍ଠବର୍ତ୍ତୀ ଶୋଭନେଶ୍ୱର ମନ୍ଦିରର ଶିଳାଲିପି ମଧ୍ୟ ସେ ରଚନା କରିଥିଲେ । ମେଘେଶ୍ୱର ଶିଳାଲିପି ହେଉଛି—

"ଉଦୟନ କବିସ୍ତସ୍ୟା ଦେଶାତ୍ ପ୍ରଶସ୍ତି ବିଳାସିନୀଂ
ସୁଲଳିତ ପଦନ୍ୟା ସୋଽ ଶଶ୍ୱଦ୍ ବିଦଗ୍ଧ ମନୋହରାଂ
ଧ୍ୱନିଭିରନଶଂ କର୍ଣ୍ଣେ ଶ୍ଳିଷ୍ଟମଳଂ କୃତଦାରଣୀ
ମତିରଚୟା ଶଯ୍ୟସ୍ପୃହାଂ ପ୍ରସାଧିତବାନିମାଂ ।"

ଏହି ଲେଖାରୁ ଜଣାଯାଏ ଯେ ସେ ଅନଙ୍ଗଭୀମ ଦେବଙ୍କ ସମୟରେ ୧୧୯୦-୧୧୯୮ ଜୀବିତ ଥିଲେ । ଉଦୟନଙ୍କ ପ୍ରଶସ୍ତି କେବଳ ପୁରାଜନ୍ମାରେ ମିଳୁଥିଲେହେଁ ଏବଂ ସେ ଓଡ଼ିଆ ରାଜାଙ୍କ ପୃଷ୍ଠପୋଷକତା ଲାଭ କରି କବିତ୍ୱ ଲାଭ କରିଥିବା ସତ୍ତ୍ୱେ ବଙ୍ଗୀୟ

ଐତିହାସିକ Orissa and her remains. M.M. Ganguli P.331) ତାଙ୍କୁ ବଙ୍ଗାଳୀ ବୋଲି ଦାବୀ କରିବା ଅସଙ୍ଗତ ମନେହୁଏ ।

୪ର୍ଥରେ ଜୟଦେବ ନିଜ ଗ୍ରନ୍ଥରେ ନିଜ ପିତାମାତା ପ୍ରଭୃତି ଙ୍କର ପରିଚୟ ଦେଇଥିଲେହେଁ ନିଜର ପୃଷ୍ଠପୋଷକ ଲକ୍ଷ୍ମଣସେନ ଙ୍କର ନାମ କୁତ୍ରାପି ଲେଖି ନାହାନ୍ତି । ଏପରିକି ଲକ୍ଷ୍ମଣସେନଙ୍କ ସଭାପଣ୍ଡିତଗଣ ଜୟଦେବଙ୍କ ପରି ଜଣେ ପ୍ରସିଦ୍ଧ ସହକର୍ମୀଙ୍କ ସମ୍ପର୍କରେ କିଛି ଉଲ୍ଲେଖ କରି ନାହାନ୍ତି । ଏଣୁ ସେ ଲକ୍ଷ୍ମଣସେନଙ୍କ ସଭାକବି ନ ଥିଲେ ବୋଲି ପ୍ରମାଣିତ ହେଉଛି ।

## ଭାରତର ସର୍ବାଞ୍ଚଳରେ ଜୟଦେବ ଉତ୍କଳବାସୀ

(କ) ମୈଥିଳୀ ପଣ୍ଡିତ 'ଅଳଙ୍କାର ଶେଖର' ଗ୍ରନ୍ଥପ୍ରଣେତା କେଶବ ମିଶ୍ର ଲେଖିଛନ୍ତି—

ପ୍ରାକ୍ ପ୍ରତ୍ୟକ୍ ପୃଥିବୀଭୃତେ ଃ ପରିଷଦ ପ୍ରଖ୍ୟାତସଂଖ୍ୟାବତାଂ
ମହାମାସ୍ୱା ଭୂତଚର୍କ କେଶୟା ବିଦ୍ୟାବିଦ୍ୟାମଦଂ
ଯେ କେଂପୁତ୍କଳ ଭେ ତବ ସଭ ସମ୍ଭାବିତାଃ ପଣ୍ଡିତାଃ
ତେଷ ଶ୍ରୀ ଜୟଦେବ ପଣ୍ଡିତ କବି ଭ୍ରମନ୍ମୂର୍ଦ୍ଧନି ବିନ୍ୟସନ୍ତ ।

ଅର୍ଥାତ୍ ଉତ୍କଳ ଭୂପତିଙ୍କ ସଭା ମଣ୍ଡନ କରୁଥିବା କବି ପଣ୍ଡିତମାନଙ୍କ ମଧ୍ୟରେ ଜୟଦେବ ସର୍ବଶ୍ରେଷ୍ଠ ଥିଲେ ।

(ଖ) ସଂସ୍କୃତ 'ଭକ୍ତମାଳ' ଗ୍ରନ୍ଥର ଲେଖକ ମୈଥିଳୀ ପଣ୍ଡିତ ଚନ୍ଦ୍ରଦତ୍ତ ଜୟଦେବ ଉତ୍କଳ ଦ୍ୱିଜ ଓ ଜଗନ୍ନାଥ ପୁରୀ ପ୍ରାନ୍ତରେ ତାଙ୍କର ବାସ ସ୍ଥାନ ବୋଲି ଘୋଷଣା କରିଛନ୍ତି—

ଜଗନ୍ନାଥ ପ୍ରସାଦେ ଦେଶେ ଚୈ ବୋତ୍କଳାଭିଧେ
କେନ୍ଦୁବିଲ୍ୱ ଇତିଖ୍ୟାତୋ ଗ୍ରାମୋ ବ୍ରାହ୍ମଣସଂକୁଳଃ
ତତୋତ୍କଳେ ଅଷ୍ଟେ ଦ୍ୱିଜୋ ଜୟ ଦେବ ଇତିଶ୍ରୁତଃ
ବଦ୍ୟାଗ୍ର୍ୟସଦଭଃ ଶାନ୍ତଃ ପୁରୁଷୋତ୍ତମ ପୂଜକଃ
(ଭକ୍ତମାଳ—୩୯ ଅଧ୍ୟାୟ)

(ଗ) ଗୋଆଲିୟରବାସୀ ନାଭାଜୀ ସ୍ୱାମୀ 'ଭକ୍ତମାଳା' ଲେଖକ ତା ଉତ୍କଳୀୟ ବୋଲି ଲେଖିଛନ୍ତି ।

(ଘ) ମହାରାଷ୍ଟ୍ର ଦେଶୀୟ କବି ମହୀପତି ସ୍ୱାମୀ 'ଭକ୍ତବିଜୟ' ଗ୍ରନ୍ଥରେ ବ୍ୟାସବଚାର ଜୟଦେବ ଜଗନ୍ନାଥ ଧାମ ନିକଟବର୍ତ୍ତୀ କେନ୍ଦୁବିଲ୍ୱ ଗ୍ରାମବାସ ଥିବାର ବର୍ଣ୍ଣନା କରିଛନ୍ତି ।

(ଙ) ଆସାମର 'ସମ୍ପ୍ରଦାୟ କୁଳଦୀପକ' ଗ୍ରନ୍ଥରେ ଜୟଦେବ ଉତ୍କଳବାସୀ ଅଟନ୍ତି ବୋଲି ଲେଖି ଅଛନ୍ତି ।

(ଚ) ଆନ୍ଧ୍ର ପଣ୍ଡିତ ମାଲ୍ଲାଦି ସୂର୍ଯ୍ୟନାରାୟଣ ଶାସ୍ତ୍ରୀ 'ସଂସ୍କୃତ କବି ଜୀବନୀ ଗ୍ରନ୍ଥରେ ଗୀତଗୋବିନ୍ଦ ଲେଖକ ଏକାଦଶ ଶତାବ୍ଦୀରେ ଉତ୍କଳର ଜଗନ୍ନାଥ କ୍ଷେତ୍ର ନିକଟବର୍ତ୍ତୀ କେନ୍ଦୁବିଲ୍ୱ ଗ୍ରାମବାସୀ ବୋଲି ଲେଖି ଅଛନ୍ତି ।

ଭାରତ ସର୍ବାଞ୍ଚଳର ଲେଖକବୃନ୍ଦ ଜୟଦେବଙ୍କୁ ଉତ୍କଳବାସୀବୋଲି ସ୍ୱୀକାର କରିଥିଲେ ବେଳେ କେବଳ 'ପ୍ରସନ୍ନରାଘବ ନାଟକ ରଚୟିତା ଜୟଦେବ ୧୧ଶ ଶତାବ୍ଦୀରେ ବଙ୍ଗ ଦେଶରେ ବାସ କରିଥିଲେ ବୋଲି ଲେଖିଅଛନ୍ତି । ଏ ମତ ସଙ୍ଗୀତ ଜୟଦେବଙ୍କ କାଳ ନିର୍ଦ୍ଦେଶ ସମ୍ପୂର୍ଣ୍ଣ ଅମୂଳକ ।

ଦ୍ୱିତୀୟରେ ସପ୍ତଦଶ ଶତାବ୍ଦୀରେ ବଙ୍ଗୀୟ ଲେଖକ ବନମାଳୀ ଦାସ ବଙ୍ଗ ଭାଷାରେ 'ଜୟଦେବ—ଚରିତ, ଲେଖି ଜୟଦେବଙ୍କୁ ବୀରଭୂମି ଜିଲ୍ଲା ଅନ୍ତର୍ଗତ କେନ୍ଦୁଲୀବାସୀ ବୋଲି ବର୍ଣ୍ଣନା କରିଅଛନ୍ତି । ଚୈତନ୍ୟଙ୍କ ପରଠାରୁ ଜୟଦେବଙ୍କୁ ବଙ୍ଗୀୟ ବୋଲି ପ୍ରମାଣ କରିବାକୁ ନାନା ଭାବରେ ଉଦ୍ୟମ କରାଯାଇଅଛି । ଏହା ଯେ ସେହି ଲେଖକଙ୍କର ଦୁଃପ୍ରଚେଷ୍ଟାର ନମୁନା ଏଥିରେ ସନ୍ଦେହର ଅବକାଶ ନାହିଁ ! ଏହି ଗ୍ରନ୍ଥରେ ଅଛି—

"ଚାରିହରେକ ପର୍ଯ୍ୟନ୍ତ ଯାୟ ଗ୍ରନ୍ଥେର ବର୍ଣ୍ଣନେ
ତାର ପର ଗଙ୍ଗାତୀରେ ଯାନ ଗଙ୍ଗା ସ୍ନାନେ ।"

ତାଙ୍କ ନିର୍ଦ୍ଦେଶିତ ବୀରଭୂମି ଜିଲ୍ଲା କେନ୍ଦୁଲୀ ଗ୍ରାମରୁ ଗଙ୍ଗା ୪୦ ମାଇଲ ଦୂର ହୋଇଥିବାରୁ ସେ ଯିବା ଅସମ୍ଭବ । ଅଥଚ ଓଡ଼ିଶାର ପ୍ରାଚୀକୂଳରେ ଜୟଦେବଙ୍କ ଘର ଏବଂ 'ପ୍ରାଚୀ"ଗଙ୍ଗା ପରି ପବିତ୍ରଥିବା "ପଦପୁରାଣ"ରୁ ଜଣାଯାଏ ବୋଲି ପୂର୍ବରୁ ଆଲୋଚିତ ହୋଇ ସାରିଛି ।

ଉପରୋକ୍ତ ସମସ୍ତ ଆଲୋଚନାକୁ ସମ୍ଭାବନା ଉପରେ ଛାଡ଼ିଦେଲେ ମଧ୍ୟ ଜୟଦେବଙ୍କ ସହିତ ପୁରୀ ଶ୍ରୀମନ୍ଦିରର ସଂପର୍କରେ ସ୍ପଷ୍ଟ ପ୍ରମାଣିତ ହେଉଛି ଯେ ସେ ଉତ୍କଳୀୟ ଥିଲେ । ବଙ୍ଗଦେଶରେ କୌଣସି ପ୍ରସିଦ୍ଧ ଧର୍ମପୀଠ ସହିତ ଗୀତଗୋବିନ୍ଦ ସଂପୃକ୍ତ ନ ଥିବା ସ୍ଥଳେ ପୁରୀ ମନ୍ଦିରରେ ଏହା ଏକ ସେବାଙ୍ଗରେ ପରିଣତ ହୋଇ ପ୍ରବର୍ତ୍ତିତ ପାଠ କରହୋଇ ଆସୁଅଛି । ଶ୍ରୀମନ୍ଦିରରେ ଏହା ଏକ ପ୍ରଧାନ ନୀତି । ଜୟଦେବ ଓଡ଼ିଆ ନ ହୋଇ ବଙ୍ଗୀୟ ହୋଇଥିଲେ ଏପରି ପ୍ରଧାନ ସ୍ଥାନ ଲାଭକରି ପାରି ନ ଥାନ୍ତେ । କାରଣ ଶ୍ରୀମନ୍ଦିରର ଇତିହାସରେ କୌଣସି ଅଣଓଡ଼ିଆଙ୍କୁ ସେପରି ପ୍ରାଧାନ୍ୟ ଦିଆଯାଇ ନାହିଁ । ସେପରିକି ଭାରତପ୍ରସିଦ୍ଧ ସ୍ୱୟଂ ରାମାନୁଜ ସେବାସୂତ୍ରଁ

ହେବାକୁ ଇଚ୍ଛା କରି ମଧ ହୋଇ ପାରି ନଥିଲେ ବୋଲି 'ପ୍ରପନ୍ନାମୃତ' ୩୬ ଅଧ୍ୟାୟରୁ ଜଣାଯାଏ ।

ଜୟଦେବ ଥିଲେ ଓଡ଼ିଆ କି ବଙ୍ଗାଳୀ, ଏହା ଏକ ନିରର୍ଥକ ଆଲୋଚନା । କାରଣ ସେ ଥିଲେ ସମଗ୍ର ଭାରତର ଗୌରବ । କିନ୍ତୁ ତାଙ୍କ ସମ୍ପର୍କରେ ଉତ୍କଳ ଓ ବଙ୍ଗଦେଶରେ ବହୁକାଳଧରି ନାନା ଆଲୋଚନା ହେଉଥିବାରୁ ସାଧାରଣ ପାଠକ କୌଣସି ଏକ ସ୍ଥିର ସିଦ୍ଧାନ୍ତରେ ପହଞ୍ଚିବା ସମ୍ଭବ ନୁହେଁ । ଏ ପ୍ରବନ୍ଧରେ ପୂର୍ବରୁ ଆଲୋଚିତ କେତେକ ପ୍ରମାଣିକ ରଚନା ଅତି ସଂକ୍ଷେପରେ କେତେକ ~~ପ୍ରାମାଣିକ ରଚନା ଅତି ସଂକ୍ଷେପରେ~~ କେବଳ ସଂକଳନ କରାଯାଇଛି । ଏଥିରୁ ସ୍ପଷ୍ଟ ପ୍ରମାଣ ନ ମିଳିଲେହେଁ ଜୟଦେବ ଯେ ଉତ୍କଳୀୟ ଥିଲେ, ଏ ଧାରଣା ଅଧିକ ପ୍ରକାଶ ପାଉଅଛି ।



* ଜଗବନ୍ଧୁ ସିଂହଙ୍କ "ପ୍ରାଚୀନ ଉତ୍କଳ", ହରେକୃଷ୍ଣ ମୁଖୋପାଧ୍ୟାୟଙ୍କ ଗୀତଗୋବିନ୍ଦର ଭୂମିକା, କେଦାର ମହାପାତ୍ରଙ୍କ 'ସମାଜ'ରେ ପ୍ରକାଶିତ 'ଜୟଦେବଙ୍କ ଜନ୍ମସ୍ଥାନ' ପ୍ରବନ୍ଧ ଓ ଲକ୍ଷ୍ମୀନାରାୟଣ ହରିଚନ୍ଦନ ଜଗଦେବଙ୍କ 'ଅସନ୍ତାକାଲି'ରେ ପ୍ରକାଶିତ 'ଜୟଦେବ' ଆଲୋଚନା ପ୍ରଭୃତିର ସାହାଯ୍ୟରେ ଏହି ପ୍ରବନ୍ଧଟି ସଂକଳିତ ହୋଇଅଛି ।

# ଓଡ଼ିଶାର ସର୍ବପ୍ରଥମ ଦୈନିକ ସଂବାଦପତ୍ର

ଓଡ଼ିଶାର ସମ୍ବାଦ ପତ୍ର ବିଷୟରେ ବିଧିବଦ୍ଧ ଆଲୋଚନା ହୋଇ ନଥିବାରୁ ଅନେକ ସମୟରେ ସାଧାରଣ ପାଠକ ଓ ଆଲୋଚକମାନଙ୍କ ମନରେ ନାନା ଭ୍ରମ ପ୍ରମାଦ ଦୃଷ୍ଟି ଗୋଚର ହୁଏ । ଓଡ଼ିଶାରେ ସାମ୍ବାଦିକତାର ଇତିହାସ ଅତି ପ୍ରାଚୀନ ନୁହେଁ । ତଥାପି ଏହି ଅଳ୍ପକାଳ ମଧ୍ୟରେ ବହୁ ପତ୍ରପତ୍ରିକାର ଅଭ୍ୟୁଦୟ ଓ ବିଲୟ ଘଟିଅଛି । ଆଜିର ଏ ବିରାଟ ଉତ୍କଳରେ ସମ୍ବାଦପତ୍ର ଶିଳ୍ପ ବ୍ୟାପକ ହୋଇ ପାରି ନାହିଁ । ମୁଷ୍ଟିମେୟ ସାପ୍ତାହିକ ମାସିକ ଓ ସାମୟିକ ପତ୍ରିକାକୁ ଛାଡ଼ିଦେଲେ ଆଙ୍ଗୁଠି ଅଗରେ ଗଣିଲାଭଳି ଅଳ୍ପ କେତେଗୋଟି ଦୈନିକ ପ୍ରକାଶ ହେଉଅଛି । ଏହି ଅଳ୍ପକାଳ ମଧ୍ୟରେ "ସମାଜ"କୁ ଛାଡ଼ିଦେଲେ ଅନ୍ୟ ପତ୍ରିକା ଗୁଡ଼ିକ ନିଜର କୈଶୋରାବସ୍ଥା ଅତିକ୍ରମ କରିଛନ୍ତିବୋଲି କହିହେବନାହିଁ । ବହୁକାଳ ତଳେ ସାପ୍ତାହିକ ଭାବରେ ଦେଖାଦେଇଥିଲେହେଁ ଗତ ୧୯୪୭ ଅଗଷ୍ଟ ଆଠ ତାରିଖ ଦିନ 'ପ୍ରଜାତନ୍ତ୍ର' ଦୈନିକ ପ୍ରକାଶ ପାଇଥିଲା । ୧୯୪୯ ସାଲରେ ଓଡ଼ିଶାରେ ବର୍ତ୍ତମାନ ଥିବା ଏକମାତ୍ର 'ଇଷ୍ଟର୍ଣ୍ଣ ଟାଇମସ୍' ଜନ୍ମ ଲାଭ କରିଥିଲା । ସେହିପରି ପୂର୍ବରୁ ଅର୍ଦ୍ଧସାପ୍ତାହିକ ଓ ପରେ କିଛିକାଳ ସାପ୍ତାହିକ ହୋଇ ପ୍ରକାଶ ପାଇଲା ପରେ ୧୯୫୧ସାଲରୁ 'ମାତୃଭୂମି' ଦୈନିକ ଆକାର ଧାରଣକରି ପ୍ରକାଶିତ ହେଉଅଛି ।

ଏତଦବ୍ୟତୀତ ୧୯୩୩ରେ ଗଞ୍ଜାମରୁ 'ଧର୍ମଦୂତ' ୧୯୩୦ରେ କଟକରୁ ରାମପ୍ରସାଦ ସିଂହଙ୍କ ସମ୍ପାଦନାରେ 'ସ୍ୱରାଜ' ୧୯୪୧ରେ ପଣ୍ଡିତ ଗୋଦାବରୀଶଙ୍କ ସମ୍ପାଦନାରେ 'ଜନତା', ୧୯୪୨ରେ ମିଳିତ ମନ୍ତ୍ରୀମଣ୍ଡଳ ବେଳେ ପଣ୍ଡିତ ନୀଳକଣ୍ଠଙ୍କ ସଂପାଦକତ୍ୱରେ 'ନବଭାରତ' କିଛିକାଳ ଦୈନିକ ଭାବରେ ପ୍ରକାଶିତ ହୋଇ ଅକାଳରେ ବିଲୟ ଭଜିଛନ୍ତି । ଓଡ଼ିଶାରେ ପ୍ରଥମ ଦୈନିକ ସଂବାଦପତ୍ର କିଏ ? ଏଭଳି ପ୍ରଶ୍ନ ପଚାରିଲେ ଅନେକ 'ସମାଜ' କଥା ଚିନ୍ତା କଲାବେଳେ ପ୍ରାଚୀନ ଲୋକେ "ଦୈନିକ ଆଶା" କଥାହିଁ କହୁଥାଆନ୍ତି । ଏପରିକି 'ଉତ୍କଳର ପତ୍ରପତ୍ରିକା' ଶିରୋନାମାରେ ଆଲୋଚନା କରି 'ସହକାର' ଭଳି ପତ୍ରିକା ମଧ୍ୟ 'ଦୈନିକ ଆଶା'କୁ ସର୍ବପ୍ରଥମ ଦୈନିକବୋଲି ମତ ପ୍ରଦାନ କରିଛନ୍ତି । ସେ ଲେଖିଛନ୍ତି— 'ଏହି ସାପ୍ତାହିକ ପତ୍ରିକାଖଣ୍ଡି ଶ୍ରୀ ଶଶୀଭୂଷଣ ରଥଙ୍କ ସଂପାଦକତ୍ୱରେ ୧୯୧୩ଖ୍ରୀଷ୍ଟାବ୍ଦରେ ଗଞ୍ଜାମର ବ୍ରହ୍ମପୁରଠାରୁ ପ୍ରକାଶିତ ହୋଇଥିଲା । ବର୍ତ୍ତମାନ ଏହା ଦୈନିକ ପତ୍ରିକାରେ ପରିଣତ ହୋଇଥିଲେହେଁ ସାପ୍ତାହିକ ସଂସ୍କରଣର ପ୍ରକାଶନ ବନ୍ଦ ହୋଇନାହିଁ । ଉତ୍କଳର ଏହା ପ୍ରଥମ ଦୈନିକ ପତ୍ରିକା । (ସହକାର, ଚତୁର୍ଦ୍ଦଶ ଭାଗ, ଷଷ୍ଠସଂଖ୍ୟା ପୃ୫୭୮ ) ୧୯୧୩ ସାଲର ସାପ୍ତାହିକ ଭାବରେ ଜନ୍ମ ଲଭି କରିଥିଲେବି 'ଆଶା' ୧୯୨୮ ସାଲରେ ଦୈନିକ ରୂପ ଗ୍ରହଣ କରିଥିଲେ । ଠିକ୍ ସେହିପରି 'ସମାଜ' ୧୯୧୯ରୁ ସାପ୍ତାହିକ ଭାବରେ ପ୍ରକାଶିତ ହୋଇ ୧୯୩୨ରେ ଦୈନିକ ହୋଇଥିଲା ।

ବର୍ତ୍ତମାନ ପ୍ରଶ୍ନ ହେଉଛି— ତାହାହେଲେ "ଆଶା" କଣ ଉତ୍କଳର ସର୍ବପ୍ରଥମ ଦୈନିକ ପତ୍ରିକା ? ୧୯୨୮ ସାଲ ପୂର୍ବରୁ ଉତ୍କଳରେ କଣ ଦୈନିକ ପ୍ରକାଶ ପାଇଁ ଆଦୌ ଉଦ୍ୟମ ହୋଇ ନଥିଲା ?

# ପ୍ରଥମ ଦୈନିକର ଜନ୍ମ ଇତିହାସ

ବାସ୍ତବରେ 'ଦୈନିକ ଆଶା'ର ଜନ୍ମ ପୂର୍ବରୁ ଓଡ଼ିଶାରେ ଦୈନିକ ସମ୍ବାଦପତ୍ର ପ୍ରକାଶ ପାଇଁ ଉଦ୍ୟମ ହୋଇଥିବାରୁ ଏହାର ସ୍ମୃତି ଆଲୋଚକମାନଙ୍କ ମନରେ ବୋଧହୁଏ ବିଶେଷ ରେଖାପାତ କରିପାରି ନାହିଁ । ଆଲୋଚ୍ୟ ଦୈନିକଟି 'ଗାନ୍ଧୀ ସମାଚାର' ନାମରେ ସ୍ୱର୍ଗତ କଂଗ୍ରେସ ନେତା ନିରଞ୍ଜନ ପଟ୍ଟନାୟକଙ୍କ ସମ୍ପାଦକତ୍ୱରେ ବ୍ରହ୍ମପୁରଠାରୁ ପ୍ରକାଶ ପାଇଥିଲା । ୧୯୨୭ ନଭେମ୍ବର ୯ ତାରିଖ ଦିନ 'ସମାଚାର' ଜନ୍ମଗ୍ରହଣ କରି ଦୈନିକ ସଂଖ୍ୟା ଭାବରେ ପ୍ରକାଶିତ ହୋଇଥିଲା, ଏବଂ ମାତ୍ର ଦୁଇମାସରେ ୧୯୨୮ ଜାନୁଆରୀ ୩ ତାରିଖ ମଙ୍ଗଳବାର ଦିନ ଏହା ଚିରକାଳ ପାଇଁ ବିଲୟ ଭଜିଥିଲା । ସେତେବେଳେ ଏହି ପତ୍ରିକାର ଦାମ୍ ଏକ ପଇସା କରାଯାଇଥିଲା ଏବଂ ଦୈନିକ ପତ୍ରିକା ପ୍ରକାଶ କରିବାରେ ପରିଚାଳକ ତଥା ସଂପାଦକ ନୂତନ ହୋଇଥିବାରୁ ସାରା ଓଡ଼ିଶାର ପ୍ରଚାର ପାଇଁ ବିଶେଷ ଆୟୋଜନ ହୋଇ ପାରି ନଥିଲା । 'ଗାନ୍ଧୀ ସମାଚାର' ପାଠ କଲେ ସେମାନଙ୍କର ପ୍ରଥମ ଅନୁଭୂତି ଓ ଅସୁବିଧା ସଂପର୍କରେ ଅନେକ କଥା ଜାଣିହୁଏ । ୯ । ୧୧ । ୨୭ ତାରିଖ ସମାଚାର ପଢ଼ିଲେ ଜଣାଯାଏ ବ୍ରହ୍ମପୁର ଛଡ଼ା ଅନ୍ୟ ସହର ମାନଙ୍କରେ ପତ୍ରିକା ବିକ୍ରି କରିବାର ଆୟୋଜନ ହୋଇ ପାରି ନାହିଁ । ସାମାନ୍ୟ କେତେଜଣ ବନ୍ଧୁମାନଙ୍କ ଠାକୁ ଡାକରେ ପଠା ଯାଇଛି । ପ୍ରଥମ ଦିନ ବ୍ରହ୍ମପୁର ଠାରେ ଏକ ପଇସା କରି ବିକ୍ରୀ ହୋଇଛି ୭୨୪ ଗୋଟି । ଦ୍ୱିତୀୟ ଦିନ ୧୫୦ ଗୋଟି, ତୃତୀୟ ଦିନ ୪୦୬ ଗୋଟି । ଉତ୍କଳରେ ଦୈନିକ ପତ୍ରିକାର ଆୟୋଜନ ଯେପରି ନୂତନ, ଆମ୍ଭମାନଙ୍କୁ ଏ ସଂପର୍କରେ ଅନେକ

ବିଷୟ ଶିକ୍ଷା କରିବାକୁ ପଡ଼ୁଛି । ବିଭିନ୍ନ କେନ୍ଦ୍ରର ବନ୍ଧୁମାନଙ୍କୁ ସଂବାଦଦାତା ଭାବରେ ଏହି ଉଦ୍ୟମରେ ସହଯୋଗ କରିବାକୁ ବିନୀତ ନିବେଦନ କରୁଅଛି ।

ଇତି ମଧ୍ୟରେ ଅନେକ ବନ୍ଧୁ ଏକାର୍ଯ୍ୟରେ ନିଜର ଉତ୍ସାହ ପ୍ରକାଶ କରିଅଛନ୍ତି । ପତ୍ରିକା ଖଣ୍ଡି ଏକ ପଇସାରେ ଯୋଗାଇବା ସହଜ ବ୍ୟାପାର ନୁହେଁ, ଏଥିଲାଗି ବର୍ତ୍ତମାନ ପାଇଁ ଜାଣି ଶୁଣି କ୍ଷତି ପାଇଁ ପ୍ରସ୍ତୁତ ହେବାକୁ ପଡୁଛି । କିନ୍ତୁ ସର୍ବାପେକ୍ଷା ପତ୍ରିକା ସଂପାଦକ କାର୍ଯ୍ୟରେ ଯେଉଁ ବନ୍ଧୁମାନେ ଲଗିଛନ୍ତି, ସେମାନଙ୍କ ବିନା ପରିଶ୍ରମରେ ପତ୍ରିକା ପ୍ରକାଶ କରିବା ଉଦ୍ୟମ ଆଦୌ ହୋଇ ନଥାନ୍ତା । (ଗାନ୍ଧୀ ସମାଚାର—୨ୟ ପୃଷ୍ଠା)

## ପତ୍ରିକାର ଲକ୍ଷ୍ୟ

ସବୁ ପତ୍ରିକାର ଏକ ନିର୍ଦ୍ଦିଷ୍ଟ ଆଦର୍ଶ ଅଥବା ଲକ୍ଷ୍ୟ ରହିଛି । ଏ ଯୁଗରେ ପ୍ରତ୍ୟେକ ପତ୍ର ପତ୍ରିକା ନାନା ମତବାଦକୁ ସମର୍ଥନ କରି ପ୍ରକାଶିତ ହୁଅନ୍ତି । 'ଗାନ୍ଧୀସମାଚାର'ର ଲକ୍ଷ୍ୟ, ଆଦର୍ଶ ଅଥବା ଭବିଷ୍ୟତ ନେଇ କୌଣସି ପ୍ରକାର ସୂଚନା ତାହାର ପ୍ରଥମ ଭାଗ ପ୍ରଥମ ସଂଖ୍ୟାରେ ଲେଖକ ଦେଇ ନାହାନ୍ତି । କେବଳ ପତ୍ରିକାର ନାମକରଣରୁ ଏହାର ଲକ୍ଷ୍ୟ ସଂପର୍କରେ ସମ୍ୟକ ଧାରଣା କରିହୋଇ ପାରେ । ସମାଚାରର ପ୍ରଥମ ପୃଷ୍ଠାରେ ଗଞ୍ଜାମ ଜିଲ୍ଲାରେ ଗାନ୍ଧୀଙ୍କ ଉତ୍କଳ ଆଗମନ ଉପଲକ୍ଷେ ଜିଲ୍ଲା ବ୍ୟାପି ଆୟୋଜନ ସଂପର୍କରେ ବିଶଦ ଖବର ପ୍ରକାଶ ପାଇଥିଲା । ବିଭିନ୍ନ ସ୍ଥାନରେ ଅଭ୍ୟର୍ଥନା ସମିତି ଗଠନ ସଂପର୍କରେ ମଧ୍ୟ ସଂବାଦ ପରିବେଷଣ ହୋଇଥିଲା । ତେବେ ୮ । ୧୧ । ୧୯୨୭ ତାରିଖ

'ସମାଗ୍ବର'ରେ ଲେଖା ହୋଇଛି—"ଷ୍ଟାର ଅଫ ଉତ୍କଳ'ର ସଂପାଦକ ବାବୁ ରାଜକୃଷ୍ଣ ଘୋଷ ଲେଖିଛନ୍ତି 'ଗାନ୍ଧୀ ସମାଗ୍ବର' ବେଶ ହେଉଛି । ଅଗ୍ରଲେଖା ଇତ୍ୟାଦିରେ କେବଳ ମହାତ୍ମାଙ୍କର ସମାଜ ସଂସ୍କାର ଓ 'ଖଦଡ଼' ସମ୍ବନ୍ଧରେ ମତାମତ ବିଷୟ ରହିବା ଉଚିତ ।

(ଗାନ୍ଧୀ ସମାଗ୍ବର—ପୃଷ୍ଠା)

ଏଥିରୁ ଜଣା ଯାଉଛି ଯେ, ୧୯୨୭ସାଲରେ ମହାତ୍ମାଗାନ୍ଧୀ ଉତ୍କଳ ଭ୍ରମଣରେ ଆସିଥିଲେ । ତାଙ୍କର ଆଗମନ ଉପଲକ୍ଷେ ଆୟୋଜନ କରିବା ପାଇଁ ଏବଂ ଜନସାଧାରଣ ଗାନ୍ଧୀଙ୍କ ଆଗମନ ସଂପର୍କରେ ସମ୍ପୂର୍ଣ୍ଣ ଅବଗତ ହେବା ପାଇଁ ଏକ ଦୈନିକ ପତ୍ରିକାର ଅଭାବ ଅନୁଭୂତ ହୋଇଥିଲା । ତେଣୁ ଏହିଭଳି ଐତିହାସିକ ପରିସ୍ଥିତିରେ ଓଡ଼ିଶାର ପ୍ରଥମ ଦୈନିକ ଜନ୍ମ ଲାଭ କରିବା ସ୍ୱାଭାବିକ ହୋଇ ପଡ଼ିଲା । ସେ ସମୟରେ ପ୍ରକାଶିତ ଅନ୍ୟାନ୍ୟ ପତ୍ରିକା ଗୁଡ଼ିକ ଗାନ୍ଧୀ ସମାଗ୍ବର ସଂପର୍କରେ ଯେଉଁ ମନ୍ତବ୍ୟ ଦେଇଛନ୍ତି, ସେଥିରୁ ମଧ୍ୟ ଏହାର ଲକ୍ଷ୍ୟ ସଂପର୍କରେ ସ୍ପଷ୍ଟ ଧାରଣା କରିହୁଏ ।

'ଗାନ୍ଧୀ ସମାଗ୍ବର'ର । ୧୧ । '୭ ତାରିଖ ସଂସ୍କରଣରେ ସମାଗ୍ବର ସଂପର୍କରେ ବିଭିନ୍ନ ପତ୍ରପତ୍ରିକାର ମତାମତ ନିମ୍ନମତେ ପ୍ରକାଶିତ ହୋଇଅଛି ।

"ମହାତ୍ମା ଗାନ୍ଧୀଙ୍କ ଆଗମନ ଉପଲକ୍ଷରେ ବ୍ରହ୍ମପୁର 'ଆଶା' ପ୍ରେସରୁ ଓଡ଼ିଆ ଖଦ ବିଭାଗ ପକ୍ଷରୁ ବାବୁ ନିରଞ୍ଜନ ପଟ୍ଟନାୟକଙ୍କ ସଂପାଦକତ୍ୱରେ 'ଗାନ୍ଧୀ ସମାଗ୍ବର' ଦୈନିକ ପତ୍ର ଏ ମାସ ଛବିଶିରୁ ବାହାରୁଛି । ଆକାର ଖଣ୍ଡିଏ ଫୁଲସ୍କେପ କାଗଜ ।

ଦୁଇମାସ ପର୍ଯ୍ୟନ୍ତ ଏହା ବାହାରିବ । ଏଦୁଇ ମାସକୁ ହେବାର ମୂଲ୍ୟ ଦୁଇଟଙ୍କା ମାତ୍ର ରଖା ଯାଇଛି । ଏଥିରେ କେବଳ ମହାତ୍ମା ଗାନ୍ଧୀଙ୍କ ସଂପାଦକୀୟ ସମ୍ବାଦ ଓ ପ୍ରବନ୍ଧମାନ ବାହାରୁଛି । ମହାତ୍ମାଙ୍କ ଉତ୍କଳ ଆଗମନ ପୂର୍ବରୁ ଏବଂ ଉତ୍କଳରେ ଅବସ୍ଥାନ ସମୟରେ ଓଡ଼ିଶାର ଜନସାଧାରଣଙ୍କୁ ତାଙ୍କ ଉଦ୍ଦେଶ୍ୟ, ଇଚ୍ଛା, ଅଭିପ୍ରାୟ ଜଣାଇ ତାଙ୍କର ସମୁଚିତ ଅଭ୍ୟର୍ଥନା ଲାଗି ପ୍ରସ୍ତୁତ କରିବା ଏ ପତ୍ରର ଉଦ୍ଦେଶ୍ୟ । ଉତ୍କଳରେ ଏହା ଏକ ନୂତନ ଉଦ୍ୟମ । ଏଥିଲାଗି ଉତ୍କଳ ଦୀପ ବିଭାଗ ଏବଂ ତହିଁର ପ୍ରଧାନ ପରିଚାଳକ ଶ୍ରୀଯୁକ୍ତ ନିରଞ୍ଜନ ପଟ୍ଟନାୟକଙ୍କୁ ଆମ୍ଭେମାନେ ଧନ୍ୟବାଦ ଦେଉଅଛୁ । (ସମାଜ ୧୨ । ୧ । '୭)

ପୁନଶ୍ଚ ଉତ୍କଳ ପ୍ରସିଦ୍ଧ 'ଦୀପିକା' ଲେଖିଛନ୍ତି — ବ୍ରହ୍ମପୁରରୁ ଶ୍ରୀଯୁକ୍ତ ନିରଞ୍ଜନ ପଟ୍ଟନାୟକଙ୍କ ସମ୍ପାଦକତ୍ୱରେ 'ଗାନ୍ଧୀ ସମାଚାର' ନାମକ ଖଣ୍ଡିଏ ଦୈନିକ ସମ୍ବାଦପତ୍ର ପ୍ରକାଶିତ ହେଉଅଛି । ଓଡ଼ିଶାର ଜନସାଧାରଣ ଏପର୍ଯ୍ୟନ୍ତ ସମ୍ବାଦ ପତ୍ରର ଉପକାରିତା ସମ୍ପୂର୍ଣ୍ଣ ରୂପେ ଅନୁଭବ କରିପାରି ନଥିବାରୁ ସମ୍ବାଦପତ୍ରମାନେ ଆଶାନୁରୂପ ସହାନୁଭୂତି ପାଇ ପାରନ୍ତି ନାହିଁ । ତେଣୁ ଅନେକ ସମ୍ବାଦପତ୍ର ସ୍ଥାୟୀ ହୋଇ ପାରୁନାହିଁ । ଅବଶ୍ୟ ଏ ଅବସ୍ଥା ଚିରଦିନ ରହିବ ନାହିଁ । ଆଶା କରାଯାଏ, ଶୀଘ୍ର ଏ ଅବସ୍ଥା ଦୂର ହୋଇଯିବ । ନିରଞ୍ଜନ ପଟ୍ଟନାୟକଙ୍କର ଦୈନିକସମ୍ବାଦ ପତ୍ରିକା ପ୍ରକାଶ କରିବାର ଉଦ୍ୟମ ସଫଳ ହେଉ । ଆମ୍ଭେମାନେ ପତ୍ରିକାଟିର ଦୀର୍ଘ ଜୀବନ କାମନା କରୁଅଛୁ । (ଉତ୍କଳ ଦୀପିକା—୧୨ । ୧୧ । ୨୭)

ବ୍ରହ୍ମପୁରର 'ଆଶା' ମନ୍ତବ୍ୟ ଦେଇ ଲେଖିଛନ୍ତି—

'ମହାତ୍ମା ଗାନ୍ଧୀଙ୍କ ଉତ୍କଳାନୁଗମନ ଉପଲକ୍ଷେ ଶ୍ରୀମାନ ନିରଞ୍ଜନ ପଟ୍ଟନାୟକଙ୍କ ସଂପାଦକତ୍ୱରେ ବ୍ରହ୍ମପୁର ଆଶା ପ୍ରେସରୁ 'ଦୈନିକ ସମାଚାର' ନାମରେ ଏକ ଦୈନିକ ଓଡ଼ିଆ ଖବର କାଗଜ ଏ ମାସ ୩ ତାରିଖରୁ ପ୍ରକାଶିତ ହେଉଅଛି । ଆକାର ଫୁଲ ସ୍କେପ ୪ ପୃଷ୍ଠା । ଦୁଇମାସ ପାଇଁ ମୂଲ୍ୟ ଦୁଇଟଙ୍କା । ଏହା ଅନ୍ତତଃ ଦୁଇମାସ ଚଳିବ । ସେତିକି ଗ୍ରାହକ ସ୍ଥାୟୀ କରାଯିବାର ଉଦ୍ୟମ କରାଯିବ । ବାର୍ଷିକ ମୂଲ୍ୟ ଯେତେ ହେବ, ଏ ଦୁଇମାସ ଚଳାଇଲା ପରେ ଧାର୍ଯ୍ୟ କରାଯିବ । ଓଡ଼ିଶାରେ ଦୈନିକ ଖବର କାଗଜ ବାହାରିବା ଏହା ପ୍ରଥମ । ଲୋକଙ୍କର ଆଗ୍ରହ ଓ ଆନୁକୂଲ୍ୟ ଉପରେ ଏହାର ସ୍ଥାୟୀତ୍ୱ ନିର୍ଭର କରୁଅଛି । ଆଶାକରୁଁ, ସବୁଆଡ଼ୁ ଏହି ନୂତନ ଉଦ୍ୟମ ପ୍ରତି ସହାନୁଭୂତି ଓ ସହାୟତା ମିଳିବ ।'

(ଆଶା—୭ । ୧୧ । ୨୭)

ଉପରୋକ୍ତ ମର୍ମରେ ସାପ୍ତାହିକ 'ପ୍ରଜାତନ୍ତ୍ର' ଓ 'ସାଧନା' ମଧ୍ୟ ମତବ୍ୟକ୍ତ କରିଛନ୍ତି ।

ଏଥିରୁ ସେ ସମୟରେ ନୂତନ କରି ଗଢ଼ି ଉଠୁଥିବା ସଂବାଦ ଶିଳ୍ପର ଅବସ୍ଥା ସଂପର୍କରେ ସବିଶେଷ ଧାରଣା କରି ହେଉଛି । ଗାନ୍ଧୀଙ୍କ ଆଗମନ ଉପଲକ୍ଷେ 'ସମାଚାର' ପ୍ରକାଶ ପାଇଥିଲେବି ପତ୍ରିକାଟିକୁ ସାମୟିକପତ୍ର ଭାବରେ ପ୍ରକାଶ କରିବା ପରିଚାଳକମାନଙ୍କର ଉଦ୍ଦେଶ୍ୟ ନଥିଲାବୋଲି ସ୍ପଷ୍ଟ ଜଣା ପଡ଼ୁଛି । କାରଣ ଲୋକଙ୍କ ସମର୍ଥନ, ଗ୍ରାହକ ସଂଖ୍ୟା ଏବଂ ଆର୍ଥିକ ସ୍ୱଚ୍ଛଳତା ଉପରେ ପତ୍ରିକାଟିର ଦୀର୍ଘ ଜୀବନ ନିର୍ଭର କରିବ ବୋଲି ଅନ୍ୟାନ୍ୟ ପତ୍ରିକା ଗୁଡ଼ିକ ଚେତାବନୀ ଶୁଣାଇ ସମର୍ଥନ ପାଇଁ

ଅନୁରୋଧ କରନ୍ତୁ । ବିଶେଷତଃ ପ୍ରଥମ କରି ପ୍ରକାଶ ପାଉଥିବା ଦୈନିକ ସମ୍ବାଦପତ୍ର ଅର୍ଥିକ ମାତ୍ରରେ ଯୋଗାଇ ଦିଆଯାଉଥିଲା ବୋଲି ପୂର୍ବରୁ ଉଲ୍ଲେଖ କରାଯାଇଛି । ଫଳରେ ଏଭଳି ପରିସ୍ଥିତିରେ କେତେଦିନ ଅବା ପତ୍ରିକା ବଞ୍ଚି ପାରନ୍ତା ? ପତ୍ରିକାଶିଳ୍ପ ସଂପର୍କରେ ଯାହାଙ୍କର ଧାରଣା ଅଛି, ସେମାନେ ଜାଣନ୍ତି ଏ ଯୁଗରେ ମଧ୍ୟ ଆମ ଉତ୍କଳ ଭାଷାର ସମ୍ବାଦ ପତ୍ର ଗୁଡ଼ିକ ଅନ୍ୟାନ୍ୟ ପ୍ରାନ୍ତୀୟ ସମ୍ବାଦପତ୍ର ଭଳି ଖ୍ୟାତନାମା ସାପ୍ତାହିକ ଗୁଡ଼ିକ ଦୈନିକ ହେବା ପାଇଁ ସାହସ ନ କରି ଥିବାସ୍ଥଳେ ନିରଞ୍ଜନ ବାବୁ ଅଗଭର୍ତ୍ତି ହୋଇ ଦୈନିକ ପତ୍ରିକା ପ୍ରକାଶ କରିବାରେ ଯେଉଁ ସାହସିକତାର ପରିଚୟ ଦେଇଛନ୍ତି, ତାହା କହିବାର ନୁହେଁ ।

## ସମ୍ବାଦପତ୍ର ନା ବୁଲେଟିନ !!!

'ସମାଚାର' ଯେ ବୁଲେଟିନ ନୁହେଁ ତାହା ପୂର୍ବରୁ ସୂଚିତ ହୋଇଅଛି । ଏହା ସ୍ପଷ୍ଟତଃ ଦୈନିକ ସମ୍ବାଦପତ୍ର । ତଥାପି ଏହା ଏକ ସ୍ୱତନ୍ତ୍ର ଉଦ୍ଦେଶ୍ୟରେ ଅଳ୍ପକାଳ ପାଇଁ ପ୍ରକାଶ ପାଉଥିବାରୁ ବୁଲେଟିନ କହିଲେ ଅସଙ୍ଗତ ହେବକି ? ଏ ପ୍ରଶ୍ନର ଆଲୋଚନା ପୂର୍ବରୁ ସମ୍ବାଦ ପତ୍ରର ମୌଳିକ ଗୁଣ ସମ୍ପର୍କରେ ଧାରଣାକରି ତାହାକୁ 'ସମାଚାର' ସହିତ ବିଚାର କଲେ ସମସ୍ୟାଟି ଆପେ ଆପେ ସାଧନ ହୋଇଯିବ । ସମ୍ବାଦପତ୍ର ହେଉଛି—
News-paper, a periodical publication, the primary function of which is to supply the best and most accurate information on matters of public importance, on human interest. It may and usually does offer views and opinions on current events and articles and featurs having no close connection with the imme-

diate news may also be included, but the presentation of news,, clearly and accurately, remains the chief function of the news paper." (Chamber's Encyclopaedia-- Vol IX. P. 840 ) ଏଥିରୁ ଜଣାଯାଉଛି—ସମ୍ବାଦପତ୍ର ହେଉଛି ଏକ ସାମୟିକ ପ୍ରକାଶ ପତ୍ର । ଏଥିରେ ସବୁଠାରୁ ସଜ ଖବର ଏବଂ ସାଧାରଣ ଲୋକର ଆଗ୍ରହ ଜନ୍ମିଲାଭଳି ଅଥବା ସ୍ୱାର୍ଥ ଉଦ୍ଦୀପକ ସମ୍ବାଦ ପରିବେଷିତ ହେବା ଆବଶ୍ୟକ । ଚଳିତ ଖବର ଉପରେ ଏହା ସମ୍ପାଦକୀୟ ମତାମତ ଦେଇ କରିପାରେ ଏବଂ ଚଳିତ ଘଟଣା ସମ୍ବନ୍ଧ ସମ୍ପର୍କ ନଥାଇ ମଧ୍ୟ ଲୋକଙ୍କ ଆକର୍ଷଣୀୟଭଳି ନାନା ବିଷୟରେ ଅଗ୍ରଲେଖା ମଧ୍ୟ ପ୍ରକାଶ କରାଯାଇ ପାରେ । କିନ୍ତୁ ଏସବୁ ମଧ୍ୟରେ ସମ୍ବାଦପତ୍ରର ପ୍ରଧାନ କର୍ତ୍ତବ୍ୟ ହେଉଛି, ଅତି ସ୍ପଷ୍ଟ ଏବଂ ନିର୍ଭୁଲ ଭାବରେ ସମ୍ବାଦ ପ୍ରକାଶ କରିବା ।

ଉପରୋକ୍ତ ମାନଦଣ୍ଡରେ ଗାନ୍ଧୀ 'ସମାଚାର'ର ଆଲୋଚନା କଲେ ତାହା ଯେ ଏକ ସମ୍ବାଦପତ୍ର, ଏଥିରେ ଆଦୌ ସନ୍ଦେହ ନାହିଁ । କାରଣ ତତ୍କାଳୀନ ଭାରତରେ ପୁଣି ପରାଧୀନ ଭାରତରେ ମହାତ୍ମା ଗାନ୍ଧୀଙ୍କୁ କେନ୍ଦ୍ର କରି ଭାରତର ଜାତୀୟ ଆନ୍ଦୋଳନହିଁ ମୁଖ୍ୟ ସମ୍ବାଦ ହୋଇଥିଲା । ତେଣୁ ଯେକୌଣସି ଜାତୀୟ ସଂବାଦ ପତ୍ରରେ ମହାତ୍ମା ଗାନ୍ଧୀଙ୍କ କଥାହିଁ କହିବା ସ୍ୱାଭାବିକ । କାରଣ ତାଙ୍କର ଚେଷ୍ଟା ଫଳରେ ସମଗ୍ର ଦେଶରେ ନୂତନ ଜାଗରଣ ସମ୍ଭବ ହୋଇଥିଲା । ତେଣୁ ତାଙ୍କର ଉଦ୍ଦେଶ୍ୟକୁ ସାଫଲ୍ୟ ମଣ୍ଡିତ କରିବାପାଇଁ 'ସମାଚାର' ପ୍ରକାଶ ପାଇବାରେ ଯେପରି ଜାତୀୟତାର ପରିଚୟ ଦେଇଛନ୍ତି, ସମ୍ପାଦ-

ପତ୍ର ଭାବରେ ଦେଶର ପ୍ରଧାନ ସମ୍ବାଦପତ୍ରର ଗୁରୁତ୍ୱ ମଧ୍ୟ ଲୋକମାନଙ୍କ ଆଗରେ ବାଢ଼ି ଦେଇଛନ୍ତି । ମାତ୍ର ଆଜିର 'ସମ୍ବାଦ ପତ୍ର' ପଢ଼ିବାରେ ଯେଉଁମାନେ ଅଭ୍ୟସ୍ତ, ସେମାନେ ତୃଷି ଶାଳରୁ ଢେଙ୍କାନାଳଯାଏ ସମସ୍ତ କଥା ଦେଖିବାରେ ଅଳ୍ପ ବହୁତେ ପାଆନ୍ତି । 'ସମାଚାର' ମଧ୍ୟ ସେ ସଂପର୍କରେ ଆମ୍ଭମାନଙ୍କୁ ହତାଶ କରିନାହିଁ ।

## ଗାନ୍ଧୀ ସମାଚାର ଓ ସମସାମୟିକ ଇତିହାସ

ସମ୍ବାଦପତ୍ରକୁ ଆଜିକାଲି 'ଚଳନ୍ତା ଇତିହାସ' କୁହାଯାଉଥାଏ । ତେଣୁ ଅତୀତର ଇତିହାସ ସଂପର୍କରେ ସମାଚାର ଅଧ୍ୟୟନ କଲେ ଆମ୍ଭମାନଙ୍କୁ ସମସାମୟିକ ପରିସ୍ଥିତି ସଂପର୍କରେ ଅନେକ କଥା ଜଣାପଡ଼େ । 'ପଣ୍ଡିତ୍ର ନାରାୟଣ ଅସ୍ପୃଶ୍ୟ ଅନୁନ୍ନତ ଜାତି' 'ହିନ୍ଦୁ ମୁସଲମାନ ମିଳନ' 'ମହାତ୍ମା ଗାନ୍ଧୀ' 'ମହାତ୍ମାଙ୍କ ଦର୍ଶନ ପାଇଁ ଉତ୍କଳ ବ୍ୟାପି ଆତୁରତା' ଶିରୋନାମାରେ ନାନା ସମ୍ବାଦ ପ୍ରକାଶ ପାଉଛି । ଏଥିରୁ ସେ ସମୟର ଭାରତର ସାମାଜିକ ଓ ରାଜନୈତିକ ଚିତ୍ର ମନରେ ଧାରଣା କରିହୁଏ । ଏତଦ୍ ବ୍ୟତୀତ ସ୍ୱାଧୀନତା ବାଧ୍ୟ, ଉତ୍କଳର ବନ୍ୟା ମରୁଡ଼ି, ଦୁର୍ଭିକ୍ଷ ଜନିତ ନାନା ସମସ୍ୟା ସଂପର୍କରେ ବହୁ ଲେଖା ପ୍ରକାଶ ପାଇଛି । ଜାତୀୟ ଆନ୍ଦୋଳନକୁ ଉଦ୍‌ବୁଦ୍ଧ କରିବା ପାଇଁ ପଣ୍ଡିତ ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର, ଚନ୍ଦ୍ରଧର ମହାପାତ୍ର, କୃପାସିନ୍ଧୁ ହୋତା ପ୍ରଭୃତି ବହୁ ଲେଖକଙ୍କର ଗାନ୍ଧୀ, ଖଦଡ଼ ଓ ସ୍ୱଦେଶୀ ଆନ୍ଦୋଳନ ସଂପର୍କୀୟ ସଂକୀର୍ତ୍ତନାଦି ପ୍ରକାଶ ହୋଇଛି । ପୁନଶ୍ଚ 'ହିସାବଦେଖ' ସିରୋନାମାରେ ପୃଥିବୀର ବଡ଼ବଡ଼ ଦେଶର, ଆୟତନ, ଜନସଂଖ୍ୟା, ଧର୍ମ ଅନୁସାରେ ଭାରତର ଲୋକସଂଖ୍ୟା, ଜନବସତିର ପରିମାଣ, ଭାରତର

ବିଧବା, ଭାଷା ଅନୁସାରେ ଜନସଂଖ୍ୟା, ବୟସ ଅନୁସାରେ ଭାରତର ବିଧବା, ଶିଶୁ ମୃତ୍ୟୁ, ଡାକ୍ତରଙ୍କ ବାର୍ଷିକ ଆୟ, ବିଭିନ୍ନ ଦେଶର ଦାରିଦ୍ର୍ୟକବଳିତ ଲୋକସଂଖ୍ୟା ସମ୍ପର୍କରେ ଧାରାବାହିକ ଭାବରେ ବିଭିନ୍ନ ସଂଖ୍ୟାରେ ଉପାଦେୟ ତଥ୍ୟ ଗୁଡ଼ିକ ପ୍ରକାଶିତ ହୋଇଛି । ଆଜିକାଲି ଦେଶର ଚଳନ୍ତି ସଂଖ୍ୟା ଗୁଡ଼ିକ ଉପରେ ସବୁ ଭାରତୀୟ ସମ୍ବାଦପତ୍ର ଗୁଡ଼ିକରେ ଯେପରି ଧାରାବାହିକ ଭାବରେ ଅଗ୍ରଲେଖା ପ୍ରକାଶ ପାଇଥାଏ, ଓଡ଼ିଆ ଦୈନିକ ସଂବାଦପତ୍ର ଗୁଡ଼ି-କରେ ତାହା ହୁଏ ନାହିଁ । ବୋଧହୁଏ ଆର୍ଥିକ ଦୁରବସ୍ଥା ଏବଂ ଲେଖକର ଅଭାବଦୃଷ୍ଟେ ସେ ପ୍ରକାର ଲେଖା ପାଇଁ ଆମର ସଂବାଦ ପତ୍ର ଯତ୍ନ କରି ପାରୁ ନାହାନ୍ତି । କିନ୍ତୁ ସମାଗ୍ରର ମାତ୍ର ଦୁଇମାସର ଜୀବନ କାଳ ମଧ୍ୟରେ ବି ଅତିଶୟ ଉନ୍ନତ ଧରଣର ଆଲୋଚନା-ମୂଳକ ବହୁ ଅଗ୍ରଲେଖା ପ୍ରକାଶ କରିଥିଲେ । 'ଏଦେଶର କୃଷକ' 'କୃଷି କମିସନ' 'ବେଠି ଓ ଦୁର୍ଭିକ୍ଷ' 'ଉତ୍କଳର ଆର୍ଥିକ ଅବସ୍ଥା ଓ ତାହାର ପ୍ରତିକାର', 'ଗଡ଼ଜାତ ବେଠି' ପ୍ରଭୃତି ଅଗ୍ରଲେଖା ଗୁଡ଼ିକ ଧାରାବାହିକ ଭାବରେ ବହୁ ସଂଖ୍ୟାରେ ଆଲୋଚିତ ହୋଇଥିଲା । ଆଜିକାଲି ସଂବାଦ ପତ୍ରରେ ଯେ କୌଣସି ସମସ୍ୟା ସଂପର୍କରେ ଟିପଣୀ ପ୍ରତିବେଦନ ପ୍ରକାଶିତ ହେଉଛି । ମାତ୍ର 'ସମାଗ୍ରର' ସେପରି ନୀତି ଗ୍ରହଣ କରି ନଥିଲେ । ମାତ୍ର ଦୁଇ ତିନୋଟି ଦିନ ସମ୍ପାଦ-କୀୟ ପ୍ରକାଶିତ ହେବା ଛଡ଼ା ସେଥି ସ୍ତମ୍ଭରେ ଗାନ୍ଧୀଙ୍କର ବିଶେଷ ବାଣୀଗୁଡ଼ିକ ଅନୁବାଦ ହୋଇ ଦିଆ ଯାଇଥିଲା । ହୁଏତ ସଂପାଦକ ଭାବୁଥିଲେ, ନିଜେ ସଂପାଦକୀୟ ଲେଖି ଲୋକମାନଙ୍କୁ ନେତୃତ୍ୱ ଦେବା ଅଥବା ସମସ୍ୟାଟି ସୂଚେଇ ଦେବାରେ ଯେଉଁ ଗୁରୁତ୍ୱ ରହିଛି, ଗାନ୍ଧୀଙ୍କ ବାଣୀ ଦ୍ୱାରା ତାଠାରୁ ଅଧିକ ଅଖ୍ୟା ଲଗାଇ ପାରିବ । କାରଣ ସେତେବେଳେ ଗାନ୍ଧୀଙ୍କ ବାଣୀ ବିଜୁଳି ଭଳି ଦେଶରେ ଖେଳି ଯାଉଥିଲା ।

ଏତଦ୍‌ବ୍ୟତୀତ ସମାଜରୁ ଦେଖାଯାଏ, ସେତେବେଳେ ଓଡ଼ିଶାରେ ପ୍ରବଳ ବନ୍ୟା ହୋଇ ବହୁ କ୍ଷତି ହୋଇଥିଲା । ତେଣୁ ବମ୍ବେ 'କ୍ରନିକଲ୍' ପତ୍ରିକାରେ ଦୀନବନ୍ଧୁ ଆଣ୍ଡ୍ରୁଜ ସାହେବ Unhappy Orissa ଲେଖି ସର୍ବସାଧାରଣଙ୍କ ସାହାଯ୍ୟ ଭିକ୍ଷା କରିଥିଲେ । ଏହି ବନ୍ୟାରେ ୧୦ ହଜାର ଘର ଧ୍ୱଂସ ହୋଇଯାଇଛି ଏବଂ ଅପରିମିତ ଜମି ବାଲିଚଡ଼ା ମାଡ଼ି ଯାଇଛି । ଏହି ସମ୍ବାଦଟି ୨୮-୧୧-୨୭ ତାରିଖ ସଂସ୍କରଣରେ ସମାଜରେ ପ୍ରକାଶ ପାଇଛି । ୧୮-୧୧-୨୭ ସମାଜରୁ ଜଣା ଯାଏ ଯେ ବାରିଷ୍ଟର ଶ୍ରୀଯୁକ୍ତ ବିଶ୍ୱନାଥ ମିଶ୍ର ବନ୍ୟା ସଂପର୍କରେ ଉତ୍କୃଷ୍ଟ ପ୍ରବନ୍ଧ ପାଇଁ ୧୦୦ ଟଙ୍କା ଘୋଷଣା କରିଥିଲେ । ବୋଧହୁଏ ଦେଶର ଏହି ଦୁର୍ଗତି ସମୟରେ ନିଜେ ମହାତ୍ମା ଗାନ୍ଧି ଲୋକଙ୍କ ପ୍ରତ୍ୟକ୍ଷ ସମ୍ପର୍କରେ ଆସି ସମସ୍ୟାକୁ ବୁଝିବେ ବୋଲି ଉତ୍କଳ ଗସ୍ତ ଆରମ୍ଭ କରିଥିଲେ । କାରଣ ସେହି ସମୟରେ ତାଙ୍କ ସମ୍ପାଦିତ yong Indiaରେ ଉତ୍କଳକୁ ଭାରତ ଭୂମିର ନାଟିକା ସ୍ୱରୂପ ବୋଲି ଲେଖି ସହାନୁଭୂତି ପ୍ରକାଶ କରିଥିଲେ । ସେ ପୂର୍ବରୁ ଚିତ୍ତରଞ୍ଜନଙ୍କ ପାଖକୁ ଲେଖିଥିଲେ—"I must see the poorest people and not merely see them to look at but live near enough to understand their life and see their houses ଓଡ଼ିଶାର କଙ୍କାଳସାର ଲୋକଙ୍କ ପ୍ରତି କେବଳ ଚାହିଁଦେଲେ ମହାତ୍ମା ତୃପ୍ତି ହେବେ ନାହିଁ । ସେ ସମସ୍ୟାର ଗଭୀରତମ ପ୍ରଦେଶକୁ ଯିବାକୁ ଚେଷ୍ଟା କରିବେ ।

(ଗାନ୍ଧି ସମାଜର ପୃ୨—୨୭।୧୧।୨୭)

## ପ୍ରଥମ ଓଡ଼ିଆ ଦୈନିକର ଭବିଷ୍ୟତ

କେଉଁ ପରିସ୍ଥିତିରେ ଏବଂ କେଉଁ ଅବସ୍ଥାରେ ପଡ଼ି ସମାଜର ବଞ୍ଚି ପାରିଲା ନାହିଁ, ତାହା ଆଲୋଚିତ ହୋଇଥିଲେ ହିଁ ସେ

ସଂପର୍କରେ ସମାଚାର ତରଫରୁ ସଫେଇ ଶୁଣିବା ପାଇଁ ସ୍ୱତଃ ଆଗ୍ରହ ହେବା ସ୍ୱାଭାବିକ । ଗାନ୍ଧି ସମାଚାର କେତେଦିନ ରହିବ ? ଏ ପ୍ରଶ୍ନ କେହି କେହି ପଚାରୁଛନ୍ତି । ଅନେକ ଆଗ୍ରହ ପ୍ରକାଶ କରୁଛନ୍ତି ଯେ ଦୈନିକ ଖଣ୍ଡିଏ ଓଡ଼ିଆ ଖବର କାଗଜ ସ୍ଥାୟୀ ହୋଇ ରହିବା ଆବଶ୍ୟକ । ଜଣେ ବନ୍ଧୁ ସ୍ୱତଃପ୍ରବୃତ୍ତ ହୋଇ ସ୍ଥାୟୀ ଆୟୋଜନ କରିବାରେ ଯେ ପ୍ରାଥମିକ ଖରଚ ଲାଗିବ, ସେଥି ସକାଶେ ଏକ ଶହ ଟଙ୍କା ଦେବାକୁ ପ୍ରତିଶ୍ରୁତ ହୋଇଅଛନ୍ତି ।

ସମାଚାରରେ ପ୍ରକାଶ କରି ଯାଇଅଛି ଯେ ଦୁଇମାସ ପର୍ଯ୍ୟନ୍ତ ପତ୍ରିକା ଚାଲିବ । ସେ ଅନୁଯାୟୀ ମଧ୍ୟ ଚାନ୍ଦା ଆଦାୟ ହେଉଅଛି । ଠିକ ଜୁନମାସ ୨।୬।୨୮ ତାରିଖରେ ପତ୍ରିକା ବନ୍ଦ କରିବା ଉଦ୍ୟୋକ୍ତା ମାନଙ୍କର ଇଚ୍ଛା ନୁହେଁ । ମହାତ୍ମାଜୀ ଉତ୍କଳ ଛାଡ଼ିବା ପରେ ତାହା ସ୍ଥିର କରାଯିବ ।' (ଗାନ୍ଧି ସମାଚାର ପୃ୨-୨୫।୧୧।୨୭

'ଗାନ୍ଧି ସମାଚାର ବଞ୍ଚି ପାରିଲା ନାହିଁ । ସେ କାଳରେ ଦୈନିକ ପତ୍ରିକା ବଞ୍ଚିବା ଯେ କେତେ କଷ୍ଟ ସାଧ୍ୟ ଥିଲା, ତାହା ସମାଚାର ଜୀବନରୁ ଅନୁଭୂତ ହେଉଛି । ସମାଚାରର ଶେଷୋକ୍ତ ସଂଖ୍ୟାଟି ଆଠପୃଷ୍ଠା ହୋଇଥିଲା ଏବଂ ପତ୍ରିକା କାହିଁକି ବନ୍ଦ ହେଉଛି ଏ ସଂପର୍କରେ ସଂପାଦକ କୌଣସି ସଫେଇ ଦେଇ ନଥିଲେ । କେବଳ ପାଠକମାନଙ୍କଠାରୁ ବିଦାୟ ଭିକ୍ଷା କରିଥିଲେ । 'ବିଦାୟ ! ଆଜିଠାରୁ ଗାନ୍ଧୀ ସମାଚାର ବନ୍ଦ ରହିବ ।'

( ଗାନ୍ଧୀ ସମାଚାର ୮-୧-୨୮-ପୃ୫ )

---

